ISSN: 2456-9194, Vol. I, Issue. I, 2017

CPHFS
ପ୍ରତ୍ୟୟ
(Journal of Odia Language, Culture and Science)

# ବିଶ୍ୱାସ: ଏକ ଲୋକତାତ୍ତ୍ୱିକ ଅବଧାରଣା

ସଞ୍ଜୟ କୁମାର ବାଗ
ପୂର୍ବାଞ୍ଚଳ ଭାଷାକେନ୍ଦ୍ର
ଲକ୍ଷ୍ମୀସାଗର, ଭୁବନେଶ୍ୱର-୭୫୧୦୦୬
sanjayakumarbag@gmail.com

***ସଂକ୍ଷିପ୍ତ ପରିଚୟ*** *-ମିଥ୍, ଗାଥା, ଗୀତ, କଥାନି, ପ୍ରବାଦ ଅଧ୍ୟୟନ କ୍ଷେତ୍ରରେ ପ୍ରବଚନଭଳି ଲୋକଧାରା-'ବିଶ୍ୱାସ' ଏକ ସ୍ୱତନ୍ତ୍ର ଆଲୋଚନାର ବିଷୟ । ଗୋଟିଏ ଗୋଷ୍ଠୀର ସଦସ୍ୟଙ୍କ ମଧ୍ୟରେ ହେଉଥିବା ପାରମ୍ପରିକ ଆଦାନପ୍ରଦାନର ସ୍ୱରୂପ, ସେମାନଙ୍କର ଆଚାରବ୍ୟବହାର, ଚିନ୍ତାଧାରା, ରୀତିନୀତି, ସାଂସ୍କୃତିକ ଚେତନା ଦୈନନ୍ଦିନ ଅବଧାରଣା ସର୍ବୋପରି ସେମାନଙ୍କର ବିଶ୍ୱଦୃଷ୍ଟି ସମ୍ପର୍କରେ ଅବଗତ ହେବାକୁହେଲେ ସମ୍ପୃକ୍ତ ଗୋଷ୍ଠୀରେ ପ୍ରଚଳିତ ବିଶ୍ୱାସର ଅନୁଶୀଳନ ଏକ ଭିନ୍ନ ପରିଚିତି ସୃଷ୍ଟିକରିଥାଏ । ଆନ୍ତର୍ଜାତିକସ୍ତରରେ ବିଭିନ୍ନ ଅଞ୍ଚଳରେ ତଥା ଲୋକଗୋଷ୍ଠୀ ଗୁଡିକରେ ପ୍ରଚଳିତ ବିଶ୍ୱାସର ଅନୁଶୀଳନ ଲୋକତତ୍ତ୍ୱବିଦ୍‌ମାନେ କରିଛନ୍ତି ତଥା କରିଚାଲିଛନ୍ତି, ଏବଂ ସମ୍ପୃକ୍ତ ଗୋଷ୍ଠୀର ମହତ୍ତ୍ୱପୂର୍ଣ୍ଣଦିଗଗୁଡିକ ଅନୁଶୀଳନକରିବା ସହିତ ଅନ୍ୟମାନଙ୍କୁ ସେସମ୍ପର୍କରେ ଅବଗତକରାଇବାକୁ ପ୍ରଚେଷ୍ଟା କରୁଛନ୍ତି । ଜନ୍ ବୀମସ୍‌ଙ୍କଠାରୁ ସାମ୍ପ୍ରତିକକାଳଯାଏ ଓଡିଆ ଲୋକଧାରା ଆଲୋଚନା ପ୍ରସଙ୍ଗରେ ବିଭିନ୍ନ ଉପାଦାନର ଅନୁଶୀଳନ କରାଯାଇଥିଲେ ମଧ୍ୟ ଏଠାରେ ପ୍ରଚଳିତ ବିଶ୍ୱାସର ସ୍ୱତନ୍ତ୍ର ଅଧ୍ୟୟନକରିବା ପାଇଁ କୌଣସି ଗବେଷକ ପ୍ରୟାସକରିନାହାନ୍ତି । ଅତଏବ, ଏଠାରେ ଏହି ଅଭାବକୁ ପୃଷ୍ଠପଟ୍ଟରେ ରଖି ପଶ୍ଚିମ ଓଡିଶାର ବିଭିନ୍ନ ଲୋକ ଗୋଷ୍ଠୀ ମଧ୍ୟରେ ପ୍ରଚଳିତ ବିଶ୍ୱାସର ସ୍ୱରୂପ, ଆୟାମ, ଓ ପରିବେଷଣର ବିଭିନ୍ନ ଦିଗ ସମ୍ପର୍କରେ ଅନୁଶୀଳନ କରିବାକୁ ପ୍ରୟାସ କରାଯାଇଛି ।*

***ପ୍ରମୁଖଶବ୍ଦାବଳୀ-*(Keywords)-** *ବିଶ୍ୱାସ, (ଅନ୍ଧବିଶ୍ୱାସ(,ଦୈନନ୍ଦିନ ଜୀବନଧାରା, ଜନ୍ମବିବାହ-ମୃତ୍ୟୁ-***(Rite de-Passages)***, ପରମ୍ପରା, ପରିବେଷଣ*

## I. ଉପକ୍ରମ:

ଲୋକଧାରା ଗୋଟିଏ ଗୋଷ୍ଠୀର ପାରମ୍ପରିକ ଜ୍ଞାନ ବା ବିଶ୍ୱାସର ପରିପ୍ରକାଶକ । ମଣିଷ ଯେତେ ଆଧୁନିକ ଜୀବନ ଜୀଇଁଲେ ମଧ୍ୟତାହାର ଦୈନନ୍ଦିନ ଜୀବନରେ ପାରମ୍ପରିକଭାବରେ ହିଁଆଦାନପ୍ରଦାନ କରିଥାଏ, ଓ ଆମର ବହୁବିଧ କାର୍ଯ୍ୟ ପଛରେ ଆମର ଏକଏକ ବିଶ୍ୱାସ ଥାଏ । ଏକ ଲୋକଗୋଷ୍ଠୀରେ ପ୍ରଚଳିତ ବିଶ୍ୱାସ ତାହାର ଦୈନନ୍ଦିନ ଜୀବନ ତଥା ବିଚାର ଓ ବିଶ୍ୱଦୃଷ୍ଟିକୁ ବହୁଭାବରେ ପ୍ରଭାବିତକରିଥାଏ । ଏପରିକି ପରିବେଶ, ପରିସ୍ଥିତି ପ୍ରସଙ୍ଗରେ ସମୟକ୍ରମେ ଲୋକଗୋଷ୍ଠୀରେ ଅନେକ ନୂତନ ବିଶ୍ୱାସର ସୃଷ୍ଟି ମଧ୍ୟହୋଇଥାଏ । ଉଦାହରଣସ୍ୱରୂପ— ଆମେ ଯାତ୍ରା ସମୟରେ ଆମର ରାସ୍ତାସାମ୍ନାକୁ ବିଲେଇଟିଏ ଆସିଲେ ତାହାକୁ ଅଶୁଭ ବୋଲି ବିଶ୍ୱାସ କରିଥାଉ । ଗୁରୁବାର ଦିନକୁ ଲକ୍ଷ୍ମୀଙ୍କବାର ମନେକରି ସେଦିନ କାହାକୁ ଟଙ୍କା, ଧାନ ଆଦି ଦେବାକୁ କୁଣ୍ଠାବୋଧ କରିଥାଉ । ସେହିପରି, ସମଗ୍ର ଓଡିଶାରେ ଅକ୍ଷୟ ତୃତୀୟା ଦିନ ଧାନବୁଣିବା ବା କୃଷିକାର୍ଯ୍ୟଆରମ୍ଭକରିବା ଶୁଭଫଳଦିଏ ବୋଲି ବିବେଚନା କରାଯାଇଥାଏ । ସମ୍ପ୍ରତି ଗଣମାଧ୍ୟମର ପ୍ରଭାବହେଉ ବା ଅନ୍ୟସାଂସ୍କୃତିକ ସଂସର୍ଗରୁହେଉ ଓଡିଆ ଲୋକଗୋଷ୍ଠୀରେ ଏକ ଧାରଣା

ସୃଷ୍ଟିହୋଇଛି ଯେ, ଧନ˝ତେରାସ˝ରେ ସୁନାକିଣିବା) ଧନତେରାସ ବା ଧନଦାତ୍ରୟୋଦଶୀ ଏକଦା ଉତ୍ତର ଏବଂ ପଶ୍ଚିମ ଭାରତରେ କାର୍ତ୍ତିକ କୃଷ୍ଣପକ୍ଷ ତ୍ରୟୋଦଶୀ ଦିନ ପାଳିତ ହେଉଥିଲା । ସମ୍ପ୍ରତି ଓଡିଶାଭଳି ଭାରତର ଅନ୍ୟାନ୍ୟ ରାଜ୍ୟରେ ଏହାର ରୀତିନୀତିଗତ ପାଳନ ନହେଲେ ମଧ ଏହିଦିନ ସୁନାକିଣିଲେ ଧନଧାନ୍ୟବୃଦ୍ଧି ହୋଇଥାଏ ଏଭଳି ବିଶ୍ୱାସ କରାଯାଏ । (ଶୁଭ, ଯଦିଓ ଏପରି ଏକ ଧାରଣା କିଛିଦଶନ୍ଧିତଳେ ନଥିଲା । ସେହିପରି, ସମ୍ପ୍ରତି ଓଡିଶାର ଅନେକ ଲୋକଗୋଷ୍ଠୀର ସଦସ୍ୟ ସେମାନଙ୍କ ଗୃହରେ 'ଲାଫିଙ୍ଗବୁଦ୍ଧ') ଲାଫିଙ୍ଗ୍ ବୁଦ୍ଧ ବା ବୁଦାଇଡା ଯାହାର ଅର୍ଥ କପ) ଜଣେ ଚାନ ସାଧୁ ଯିଏକି ଲୋକ ଦେବତାଭାବରେ ପୂଜିତ (ଗଣ୍ଡିଲି। ବୁଦାଇ ଚୀନର ଜୋଝିଆଙ୍ଗ୍ ଅଂଚଳରେ ୯୦୭ଖ୍ରୀଷ୍ଟାବ୍ଦ ୯୧୩- ମଧ୍ୟରେ ଜନ୍ମହୋଇଥିବା ବିଶ୍ୱାସ କରାଯାଏ। ବୁଦାଇଙ୍କୁ ପାଶ୍ଚାତ୍ୟରେ ଅନେକ ସମୟରେ ଗୌତମବୁଦ୍ଧ ତଥା ମୈତ୍ରେୟଙ୍କ ସହିତ ମଧ ତୁଳନା କରାଯାଇଥାଏ । ସମ୍ପ୍ରତି ଚୀନ ବାହାରେ ଅନେକ ଦେଶରେ ବିଭିନ୍ନ ଲୋକଗୋଷ୍ଠୀ ଏହି ଲାଫିଙ୍ଗ୍ ବୁଦ୍ଧଙ୍କ ମୂର୍ତ୍ତି ଘରେ ରଖିଲେ ଶୁଭ ବା ଧନସମ୍ପଦ ତଥା ପରିବାରରେ ଖୁସି ଆସେ ବୋଲି ବିଶ୍ୱାସ କରିବା ଦେଖାଯାଏ ।(ରଖିବା, ଆମର ଶିକ୍ଷା ତଥା 'ଆହରିତ ବିଶ୍ୱାସ'ର ପରିଚାୟକ । ଏହିପରି ଅନେକ ପାରମ୍ପରିକ ବିଶ୍ୱାସ ଆମ ଦୈନନ୍ଦିନ ଜୀବନରେ ଦେଖିବାକୁମିଳେ ।

ଆମର ସ୍ଥାନୀୟ ସମାଜରେ ବହୁ ଜାତି, ଜନଜାତି ତଥା ବିଭିନ୍ନ ଧର୍ମଧାରା ଓ ପରମ୍ପରାର ସମନ୍ୱୟ ଦେଖିବାକୁ ପାଇଥାଉ । ଅତଏବ, ଏସବୁ ଜାତି, ଜନଜାତି, ଏବଂ ବିଭିନ୍ନ ଲୋକଗୋଷ୍ଠୀର ସଦସ୍ୟଙ୍କ ମଧ୍ୟରେ ଏପରିକି ପାରିବାରିକସ୍ତରରେ ମଧନିଜସ୍ୱ ନିର୍ଦ୍ଦିଷ୍ଟ ବିଶ୍ୱାସଧାରା ଅଛି ଯାହା ପରିବାରର ସମସ୍ତ ସଭ୍ୟପାଳନକରିଥାନ୍ତି, ଏବଂ ଏସବୁ ସମ୍ପୃକ୍ତ ସଦସ୍ୟଙ୍କ ଜୀବନଧାରାକୁ ବହୁଭାବରେ ପ୍ରଭାବିତ କରିଥାଏ । ଉଦାହରଣସ୍ୱରୂପ, ପଶ୍ଚିମ ଓଡିଶାର ତାଣ୍ଡିବଂଶର ପରିବାରର ବଡବୋହୂ 'ଓସ୍‌ନା ଡେଗା' ଅର୍ଥାତ˝ ଅନ୍ୟଘରର ଓଳି ଡେଇଁ ଅଣାଯାଇଥିବା ତରକାରୀ ବା ଖାଦ୍ୟପଦାର୍ଥ ଖାଆନ୍ତିନାହିଁ । ସେହିପରି, ଗାଢରଙ୍ଗ କିମ୍ବା କଳାରଙ୍ଗର କପଡା ବ୍ୟବହାର କରନ୍ତିନାହିଁକାରଣ, ଏହା ତାଙ୍କ ବଂଶର ଆରାଧଦେବୀଙ୍କର ପ୍ରିୟ ୨୦୦୯ ସୁନାନୀ), ୫୩ (। ଅଞ୍ଚଳଭିତ୍ତିରେ ହେଉପଛେ ଏହି ବିଶ୍ୱାସ ସମସ୍ତ ତାଣ୍ଡି ପରିବାରର ବୋହୂମାନଙ୍କ ପାଖରେ ଦେଖାଯାଏ ଏବଂ ଏହା ସେମାନଙ୍କ ପାଇଁ ଅର୍ଥପୂର୍ଣ୍ଣ । ଅତଏବ, ଆମର ଦୈନନ୍ଦିନ ଜୀବନରେ ପାରମ୍ପରିକ ବିଶ୍ୱାସର ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ ଅସ୍ୱିକାର କରାଯାଇନପାରେ ।

ମିଥ, ଗାଥା, ଗୀତ, କଥାନି, ପ୍ରବାଦ ପ୍ରବଚନଭଳି-'ବିଶ୍ୱାସ' ଲୋକଧାରା ଅଧ୍ୟୟନ କ୍ଷେତ୍ରରେ ଏକ ସ୍ୱତନ୍ତ୍ର ଆଲୋଚନାର ବିଷୟ । ଗୋଟିଏ ଗୋଷ୍ଠୀର ଜୀବନଧାରା ତଥା ସେହି ଗୋଷ୍ଠୀର ସଦସ୍ୟଙ୍କ ମଧ୍ୟରେ ହେଉଥିବା ପାରମ୍ପରିକ ଆଦାନପ୍ରଦାନର ସ୍ୱରୂପ, ସେମାନଙ୍କର ଆଚାରବ୍ୟବହାର-, ଚିନ୍ତାଧାରା, ରୀତିନୀତି, ସାଂସ୍କୃତିକ ଚେତନା ଦୈନନ୍ଦିନ ଅବଧାରଣା ସର୍ବୋପରି ସେମାନଙ୍କର ବିଶ୍ୱଦୃଷ୍ଟି ସମ୍ପର୍କରେ ଅବଗତ ହେବାକୁହେଲେ ସମ୍ପୃକ୍ତ ଗୋଷ୍ଠୀରେ ପ୍ରଚଳିତ ବିଶ୍ୱାସର ଅନୁଶୀଳନ ଏକ ଭିନ୍ନପରିଚିତି ସୃଷ୍ଟିକରିଥାଏ । ଆନ୍ତର୍ଜାତିକସ୍ତରରେ ବିଭିନ୍ନ ଅଞ୍ଚଳରେ ତଥା ଲୋକଗୋଷ୍ଠୀ ଗୁଡିକରେ ପ୍ରଚଳିତ ବିଶ୍ୱାସର ଅନୁଶୀଳନ ଲୋକତତ୍ତ୍ୱବିଦ˝ମାନେ କରିଛନ୍ତି ତଥା କରିଚାଲିଛନ୍ତି, ଏବଂ ସମ୍ପୃକ୍ତ ଗୋଷ୍ଠୀର ମହତ୍ତ୍ୱପୂର୍ଣ୍ଣଦିଗଗୁଡିକ ଅନୁଶୀଳନକରିବା ସହିତ ଅନ୍ୟମାନଙ୍କୁ ସେସମ୍ପର୍କରେ ଅବଗତକରାଇବାକୁ ପ୍ରଚେଷ୍ଟା କରୁଛନ୍ତି ।

ଜନ˝ ବୀମସ˝ଙ୍କଠାରୁ ସାମ୍ପ୍ରତିକକାଳଯାଏ ଓଡିଆ ଲୋକଧାରା ତଥା ପଶ୍ଚିମ ଓଡିଶାର ଲୋକଧାରାର ଆଲୋଚନା ପ୍ରସଙ୍ଗରେ ବିଭିନ୍ନ ଉପାଦାନର ଅନୁଶୀଳନ କରାଯାଇଥିଲେ ମଧ୍ୟଏଠାରେ ପ୍ରଚଳିତ ବିଶ୍ୱାସର ସ୍ୱତନ୍ତ୍ର ଅଧ୍ୟୟନକରିବା ପାଇଁ କୌଣସି ଗବେଷକ ପ୍ରୟାସକରିନାହାନ୍ତି ।ଅତଏବ, ଏଠାରେ ଏହି ଅଭାବକୁ ପୃଷ୍ଠପଟ୍ଟରେରଖି ପଶ୍ଚିମ ଓଡିଶାର ବିଭିନ୍ନ ଲୋକଗୋଷ୍ଠୀ ମଧ୍ୟରେ ପ୍ରଚଳିତ ବିଶ୍ୱାସ ତଥା ସେମାନଙ୍କର ପାରମ୍ପରିକ ଆଦାନପ୍ରଦାନ, ଆଚାରବିଚାର-, ବ୍ୟବହାରଆଦିକୁ ଅନୁଶୀଳନକରିବାକୁ ପ୍ରୟାସକରାଯାଉଛି ।

## II. ବିଶ୍ୱାସସଂଜ୍ଞା :, ଏବଂ ବିଭାଗୀକରଣ

ଗୋଟିଏ ନିର୍ଦ୍ଦିଷ୍ଟ ପ୍ରସଙ୍ଗ, ବିଚାର ତଥା ଅବଧାରଣାକୁ ସାଧାରଣତଃ ଆମେ ଏକ ବିଶ୍ୱାସଭାବରେ ଗ୍ରହଣକରିଥାଉ । ଏହା ସହିତ ଆମର ପାରମ୍ପରିକ ଜ୍ଞାନ ତଥା ସାମାଜିକ ସାଂସ୍କୃତିକ ଏବଂ ମାନସିକ ଅବଧାରଣା ଜଡିତଥାଏ । ଆମେ ଆମର ଚାରିପାଖରେ ଘଟୁଥିବା ଘଟଣା, ଆମର ଦୈନନ୍ଦିନ ଜୀବନର ବିଭିନ୍ନ କାର୍ଯ୍ୟକଳାପ, ସାମାଜିକ ରୀତିନୀତି, ପ୍ରକୃତି ଏବଂ ପରିବେଶ, ଆମର କର୍ମପରିସରରେ ପାରମ୍ପରିକଭାବରେ ହିଁଆଦାନପ୍ରଦାନ କରିଥାଉ । ଏହି ଆଦାନପ୍ରଦାନଭିତରେ ଅନେକ ବିଶ୍ୱାସଗତ ଅବଧାରଣାଥାଏ ଯାହାକୁ ଆମେ ସାଧାରଣତଃ ଦ୍ୱିଧାହୀନଭାବରେ ଗ୍ରହଣକରିନେଇଥାଉ । ଉଦାହରଣସ୍ୱରୂପ— ଆମେ ପ୍ରାୟ ସମସ୍ତେ ଜାଣୁ ଯେ, ଶୁକ୍ରବାର ଦିନ ମାଁ ସନ୍ତୋଷୀଙ୍କୁ ବିଶ୍ୱାସକରୁଥିବା ଅନେକ ଲୋକ ଖଟା ଖାଆନ୍ତିନାହିଁ । ସେହିପରି, ବାପାମାଆ ଶାଶୁଶ୍ୱଶୁର ତଥା ପରିବାରର ଅନ୍ୟଗୁରୁଜନମାନଙ୍କୁ ପାଦଛୁଇଁ ପ୍ରଣାମକରିବା ମଧଆମର ଏକ ବିଶ୍ୱାସ । ଅନେକ ପରିବାରରେ ଘରର ବୋହୂ ଓଢଣାନଦେଇ ଶ୍ୱଶୁର ତଥା ଶ୍ୱଶୁରଘରର ଅନ୍ୟଗୁରୁଜନଙ୍କ ସାମ୍ନାରେ ଠିଆ ମଧହୁଅନ୍ତିନାହିଁ (ହୁଏତ ଏହି ପରମ୍ପରା ସବୁ ପରିବାରରେ ବା ସମସ୍ତ ଅଞ୍ଚଳରେ ନଥାଇପାରେ (। ଅନୁରୂପଭାବରେ, ଗ୍ରାମାଞ୍ଚଳରେ ଏବେବି କାଉରାବିଲେ କୌଣସି ଖବର ମିଳିବାର ବା ଅତିଥି ଆସିବାର ସମ୍ଭାବନା ଥାଏ ବୋଲି ବିଶ୍ୱାସ କରାଯାଏ । ସେହିପରି, କର୍ମ ପରିସରରେ ମଧବିଭିନ୍ନ ବିଶ୍ୱାସଗତ ଆଚରଣ

ଦେଖାଯାଏ, ଯେପରି— କାମ ଆରମ୍ଭକରିବା ପୂର୍ବରୁ କେହି ଜଣେ କାଗଜରେ ଓଁ ଲେଖିଥାଏ । କେହିକେହି ଅଫିସ୍‌ରେ ନିଜ ଟେବୁଲରେ ବସିବା ଆଗରୁ ହାତେଯାଡି ନମସ୍କାରକରିବା ଦେଖାଯାଏ, କିଛିଲେଖିବା ଆଗରୁ କଲମ ମୁଣ୍ଡଉପରକୁ ଉଠେଇବା ମଧଦେଖିବାକୁମିଳେ । ଅତଏବ, ବିଶ୍ୱାସ ହେଉଛି— ଗୋଟିଏ ଗୋଷ୍ଠୀର ଏକ ସାମାଜିକ, ସାଂସ୍କୃତିକ ତଥା ରୀତିନୀତିଗତ ଅବଧାରଣା ଯାହାକୁ ସେହି ଗୋଷ୍ଠୀର ସଦସ୍ୟଦ୍ୱିଧାହୀନଭାବରେ ଗ୍ରହଣକରିନେଇଥାଆନ୍ତି । ଏହାର ସଂରଚନା, ପାଳନ, ଏବଂ ପରିବେଷଣର ପୃଷ୍ଠପଟ୍ଟରେ ସାଧାରଣତଃ ସମ୍ପୃକ୍ତ ଲୋକଗୋଷ୍ଠୀର ପାରମ୍ପରିକ ଜ୍ଞାନ ତଥା ଅନୁଭୂତି କାମକରିଥାଏ ।

ବେଳେବେଳେ ଗୋଟିଏ ଗୋଷ୍ଠୀର ବିଶ୍ୱାସକୁ ଅନ୍ୟ ଗୋଷ୍ଠୀର ସଦସ୍ୟ ଅନ୍ଧବିଶ୍ୱାସ ଭାବରେ ଗ୍ରହଣ କରିଥାନ୍ତି— ‘‘Superstition, in common parlance, designates the sum of beliefs and practices shared by other people in so far as they differ from our own. What we believe and practise [sic] ourselves is, of course, Religion’’ (Krappe 1930; as quoted by Mullen 2011, 208) । ଅତଏବ, କୌଣସି ଗୋଷ୍ଠୀର ଏକ ବିଶ୍ୱାସ ସେ ଯାହାବିହେଉ ତାକୁ ଭ୍ରାନ୍ତଧାରଣା, ଅମୂଳକ ବା ଅନ୍ଧବିଶ୍ୱାସ କୁହାଯାଇନପାରେ ବରଂ, ସମ୍ପୃକ୍ତ ଗୋଷ୍ଠୀର ସଦସ୍ୟଏହାକୁ ଉପଯୁକ୍ତ ମନେକରିଥାଆନ୍ତି ତଥା ଏସବୁ ସେମାନଙ୍କ ପାଇଁ ଅର୍ଥପୂର୍ଣ୍ଣ ।

ଏଠାରେ ସ୍ଥାନୀୟ ପାରମ୍ପରିକ ଜୀବନଧାରାରେ ଦେଖାଯାଉଥିବା ବିଭିନ୍ନ ବିଶ୍ୱାସକୁ ଆମର ଆଲୋଚନାର ସହଜ ଅବଧାରଣା ନିମନ୍ତେ ପାଞ୍ଚଟିଭାଗରେ ବିଭକ୍ତକରାଯାଇ ଏହାର ବିଭିନ୍ନଦିଗ ଉପରେ ଆଲୋଚନା କରାଯିବାକୁ ପ୍ରୟାସ କରାଯାଉଛି । ତେବେ, ସୀମିତପରିସର ଯୋଗୁଁ ବିଭାଗୀକରଣକୁ ଆଧାରକରି କେବଳ ଅବଧାରଣା ପାଇଁ ଦୁଇ ତିନୋଟି ମାତ୍ର ଉଦାହରଣ ଦିଆଯାଉଛି ।

**୧ମୃ-ବିବାହ(ବିବାହ-ପ୍ରାକ୍)-ଜନ୍ମ .ତ୍ୟୁ ସମ୍ବନ୍ଧୀୟ ବିଶ୍ୱାସ**

*(କ) ଜନ୍ମମୃତ୍-ୟୁ-ବିବାହ (Rite de-Passages):*

ମଣିଷ ଜୀବନର ଏକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ । ଗୋଟିଏ ଲୋକଗୋଷ୍ଠୀରେ ଗର୍ଭଧାରଣଠାରୁ, ପ୍ରସବ, ପ୍ରସବ ପରବର୍ତ୍ତୀ ସମୟ, ଯୌବନପ୍ରାପ୍ତି, ପ୍ରାକ୍‌-ବିବାହ, ବିବାହପରବର୍ତ୍ତୀ ସମୟ, ମୃତ୍ୟୁକାଳୀନ ତଥା ମୃତ୍ୟୁ-ପରବର୍ତ୍ତୀ ଅନେକ ସାମାଜିକ ରୀତିନୀତି ପାଳିତହୋଇଥାଏ, ଅନେକ କ୍ରିୟାକର୍ମ ଅନୁଷ୍ଠିତ ହୋଇଥାଏ । ଏବଂ, ଏହି କ୍ରିୟାକର୍ମର ଅନୁଷ୍ଠାନପଛରେ ଥାଏ ସମ୍ପୃକ୍ତ ଲୋକଗୋଷ୍ଠୀର ବିଭିନ୍ନ ବିଶ୍ୱାସର ଅବଧାରଣା । ଏଠାରେ ପଶ୍ଚିମ ଓଡିଶାରେ ପ୍ରଚଳିତ ଜନ୍ମମୃ-ବିବାହ-ତ୍ୟୁ ସମ୍ପର୍କିତ ବିଶ୍ୱାସର ଗୋଟିଏ ଗୋଟିଏ ଉଦାହରଣ ଦିଆଯାଉଛି—

*(ଖ) ଚାଉଳ ଠୋକା :*

ପଶ୍ଚିମ ଓଡିଶାର ଅନେକ ଲୋକଗୋଷ୍ଠୀରେ ଶିଶୁଟିଏ ଜନ୍ମହେଲେ ତାହାକୁ ପୂର୍ବପୁରୁଷର ଡୁମାଭାବରେ ବିଶ୍ୱାସ କରାଯାଇଥାଏ କାରଣ, ଏଠାକାର ଅନେକ ଲୋକଗୋଷ୍ଠୀରେ ପରିବାରର କୌଣସି ବ୍ୟକ୍ତି ମରିଗଲେ ତାର ଡୁମାବୋହୂଙ୍କ ଗର୍ଭରେ ଆଉଥରେ -ପୁନର୍ବାର ସେହି ପରିବାରର ଝିଅ (ଆତ୍ମା) ଜନ୍ମନେଇଥାଏ ବୋଲି ବିଶ୍ୱାସକରିଥାନ୍ତି। ଅତଏବ, କେଉଁ ଡୁମା ଜାଣିବାପାଇଁ ‘ଦେବତା ଭରା’ ହୁଏ ବା କାଳିସୀ ଡକାଯାଏ । ଏଥିପାଇଁ ‘ଶିରା ସାଧାରଣତଃ ) (ଗ୍ରାମଦେବୀଦେବତାଙ୍କ ପାରମ୍ପରିକ ପୂଜକ’ଙ୍କ ପାଖକୁ କିଛି ଚାଉଳନେଇ ଯିବାକୁ ହୋଇଥାଏ । ଶିରା ଚାଉଳ ଓ କୁକୁଡା ଧରି ପୁଞ୍ଜିପାରି ମୁଠାମୁଠା ) ନାମ ଉଚ୍ଚାରଣ ସମ୍ପୃକ୍ତ ପରିବାରର ପୂର୍ବପୁରୁଷଙ୍କ (ଚାଉଳ ଅଲଗାଅଲଗା ରଖି କରିଥାଏ। ଯାହାଙ୍କ ନାମ ଉଚ୍ଚାରଣକଲାବେଳେ କୁକୁଡା ଚାଉଳ ଠୁଙ୍କିଖାଏ ସେହି ବ୍ୟକ୍ତିର ଡୁମା ଜନ୍ମନେଇଛି ବୋଲି ବିଶ୍ୱାସକରାଯାଏ । କେତେକ କ୍ଷେତ୍ରରେ ବା ଲୋକଗୋଷ୍ଠୀରେ ଏହିକାର୍ଯ୍ୟସମ୍ପୃକ୍ତ ଗୋଷ୍ଠୀର କୌଣସି ବୟସ୍କ ବ୍ୟକ୍ତିଙ୍କଦ୍ୱାରା ମଧଅନୁଷ୍ଠିତ ହୋଇଥାଏ । ତେବେ, ଅନେକତ୍ର ଆଜିକାଲି ଚାଉଳ ଠୋକାଇବା ପରିବର୍ତ୍ତେ ଜ୍ୟୋତିଷଙ୍କୁ ମଧକୋଉ ଡୁମା ଆସିଛି ବୋଲି ପଚରାଯିବା ଦେଖାଯାଏ ।

*(ଗ) ଟଲାଭଙ୍ଗା :*

ବରକନ୍ୟାର ଯୋଟକରେ କିଛି ଅଶୁଭ ମନେକଲେ ଗ୍ରାମଦେବତା ପାଖରେ ଟଲାଭଙ୍ଗା ତଥା ତାହାର ପ୍ରତିକାର କରାଯାଇଥାଏ । ଏଥିପାଇଁ ଗ୍ରାମର ପୁଝାରୀଙ୍କ ସହାୟତାରେ ଗ୍ରାମ ଦେବୀଦେବତାଙ୍କ ପାଖରେ ପୂଜାକରାଯାଇ ଶୁଭ କାମନାକରାଯାଇଥାଏ । ଏହି ପୂଜା ସହିତ କୁକୁଡା-ପାରା ମଧବଳି ଦିଆଯାଇଥାଏ ନହେଲେ, ବରକନ୍ୟାର ବୈବାହିକ ଜୀବନ ସୁଖମୟ ହେବନାହଠ ବୋଲି ବିଶ୍ୱାସ କରାଯାଏ । ଆଜିକାଲି, ଅନେକ ଲୋକଗୋଷ୍ଠୀରେ ଜ୍ୟୋତିଷଶାସ୍ତ୍ର ମତରେ ଗ୍ରହଦୋଷ ମନେକରି ଶାସ୍ତ୍ର ଅନୁରୂପ ହୋମ ତଥା ଅନ୍ୟପୂଜାପାଠ ମଧକରିବା ଦେଖାଯାଏ ।

*(ଘ) ପିତା ଗ୍ରହଣକରିବା :*

ପରିବାରରେ କାହାର ମୃତ୍ୟୁହେଲେ ଶବଦାହକରି ଘରକୁ ପ୍ରତ୍ୟାବର୍ତ୍ତନ କରିବାପରେ ନିଜ ସମାଜର ବନ୍ଧୁକୁଟୁମ୍ବଙ୍କଦ୍ୱାରା ପ୍ରଦତ୍ତ ‘ପିତା ନିମ୍ବପତ୍ରମିଶା ) (ପାଣି’ ଗ୍ରହଣ କରାଯାଇଥାଏ । ସେହିପରି, ପରିବାରରେ କାହାର ମୃତ୍ୟୁହେଲେ ଅଶୁଦ୍ଧ ମନେକରାଯାଏ । ଏହି ଅଶୁଦ୍ଧି ଲୋକଗୋଷ୍ଠୀ ଅନୁସାରେ ଦଶ, ବାର, କିମ୍ବା ତେରଦିନଯାଏ ଅବ୍ୟାହତ ରହିଥାଏ । ତେବେ, ପ୍ରାୟ ଲୋକଗୋଷ୍ଠୀରେ ଶବଦାହକରି ଆସିବାପରେ ଏହି ପିତା ଗ୍ରହଣନକରିବାପୂର୍ବରୁ ଜଳ ମଧପାନକରାଯାଇନଥାଏ । ଅତଏବ, ବନ୍ଧୁକୁଟୁମ୍ବଦ୍ୱାରା ପ୍ରଦତ୍ତ ପିତାନଖାଇ ଖାଦ୍ୟଗ୍ରହଣକରିବା ପାଇଁ ଏକ ପ୍ରକାର ନିଷେଧାଜ୍ଞା ଦେଖାଯାଏ ।

**୨ଦୈନନ୍ଦିନ ଜୀବନର ବିଶ୍ୱାସ .**

ଦୈନନ୍ଦିନ ଜୀବନରେ ଆମେ ଅନେକକାଯ୍ୟଏକଏକ ବିଶ୍ୱାସକୁ ଅବଧାରଣାକରି କରିଯାଇଥାଉ ଯଦିଓ ଏହିଦିଗପ୍ରତି ଆମେ ସଚେତନନଥାଉ ।ପ୍ରବନ୍ଧର ପ୍ରାରମ୍ଭରେ କିଛି ଉଦାହରଣଦିଆଯାଇଛି । ଏଠାରେ ଆଲୋଚନାକୁ ସହଜ କରିବାପାଇଁ ଆଉ କେତୋଟି ଉଦାହରଣ ଉଲ୍ଲେଖ କରିପାରିବା—

*(କ)ଖଟରୁ ପଡିଯିବା :*

ରାତିରେ ଶୋଇଥିବା ଅବସ୍ଥାରେ ଛୋଟପିଲାଟିଏ ଖଟରୁପଡିଗଲେ ପଶ୍ଚିମ ଓଡିଶାର କିଛି ଲୋକଗୋଷ୍ଠୀର ମାଆମାନେ ଏହାକୁ ଅଶୁଭବୋଲି ମନେକରିଥାନ୍ତି । ସେମାନେ ଭାବନ୍ତି ଯେ ଆଗକୁ ପିଲାଟିର ଦେହପା' ଖରାପହେବାର ସମ୍ଭାବନାଅଛି । ଅତଏବ, ଏହାର ପ୍ରତିକାରସ୍ୱରୂପ, ପାଖ ପଡୋଶୀର ସାତଘରୁ ସାତଢାଳପାଣି ଆଣି ତାହାକୁ ଏକତ୍ରକରି ପିଲାଟିକୁ ସେହି ପାଣିରେ ଗାଧୋଇ ଦିଆଯାଇଥାଏ।

*(ଖ)ରାଣ ଭାଙ୍ଗିବା :*

କୌଣସି ବ୍ୟକ୍ତି କୌଣସି ଏକ ପ୍ରସଙ୍ଗରେ ବା ଘଟଣାକ୍ରମେ 'କରିଆ କରିଥିଲେ' ବା ରାଣ ଖାଇଥିଲେ ସାଧାରଣତଃ ସେହି କାମ ଆଉ କରିନଥାନ୍ତି । ମନେକରନ୍ତୁ, ଦୁଇଜଣ ବାନ୍ଧବୀଙ୍କ ମଧ୍ୟରେ ଝଗଡାହେଲା, ଏବଂ ଜଣେ ବାନ୍ଧବୀ ଉତ୍ତେଜନାବଶତଃ କହିଦେଲା, "ଯଦି ମୁଁ ତୋ ସାଙ୍ଗରେ କଥାହେବି ତେବେ ମୋର ମାଆର ମୁଡ଼ଂକେଖାଏବିମୁଣ୍ଡଖାଇବି ଅର୍ଥାତ ମୋ ମାଆର)¨— ମୋ ମାଆ ମରିଯିବ("। କିନ୍ତୁ ପରବର୍ତ୍ତୀ ସମୟରେ ଯେତେବେଳେ ପରିସ୍ଥିତି ବଦଳିଯାଏ, ଏବଂ ସେ ଦି'ଜଣ ପୁଣି କଥାହେବାକୁ ବା ସମ୍ପର୍କରଖିବାକୁ ଚାହାଁନ୍ତି ତେବେ, ସେମାନଙ୍କୁ କିରିଆ ଭାଙ୍ଗିବାକୁ ପଡିଥାଏ, ଏହା 'କିରିଆ ମୁକୁଲାଇବା'ଭାବରେ ପରିଚିତ । ଏଥିପାଇଁ ଜଣେ କେହି ହୁରିଆ ସମ୍ପର୍କୟ- ଭିଣୋଇ/ପୁଅ ବା ଭାଉଜ/ଝିଅ-ମାମୁଁ), ନଣନ୍ଦଦିଅର/, ବା ଶଳା (ଶାଳୀ/ ଦରକାର ହୋଇଥାଏ। ସେ ଘରର ଓଳିତଳେ ଦି'ଜଣଙ୍କୁ ଠିଆକରାଇ ଗୋଟିଏ ଢାଳପାଣିରେ ଜଳନ୍ତାଅଙ୍ଗାରପକେଇ 'ଆଜିଠୁ ପାଣିରେ ଅଙ୍ଗାରପଡି ତାହାର ନିଆଁ ଲିଭିଗଲାପରି ରାଣ ବି ଲିଭିଗଲା' ବୋଲି ରାଣ ପକାଇଥିବା ବ୍ୟକ୍ତିର ମୁଣ୍ଡରେ ପାଣି ଢାଳିଦେଇଥାଆନ୍ତି । ଏହା ହେବାପରେ ସେ ଦେଇଥିବା ରାଣ ଭାଙ୍ଗିଗଲା ବୋଲି ବିଶ୍ୱାସ କରାଯାଏ ।

**୩କୃଷିକର୍ମ ., ଏବଂ ଅନ୍ୟାନ୍ୟ କୌଳିକବୃତ୍ତି ସମ୍ପର୍କିତ ବିଶ୍ୱାସ**

କୃଷିକର୍ମ ଏବଂ ଅନ୍ୟାନ୍ୟ କୌଳିକବୃତ୍ତିରେ ମଧ୍ୟ ଅନେକ ବିଶ୍ୱାସର ଅବଧାରଣା ଆମେ ଦେଖିବାକୁ ପାଇଥାଉ । ଫସଲ ଭଲହେବାପାଇଁ ଅକ୍ଷୟ ତୃତୀୟାଦିନ ଧାନବୁଣିବା, ବର୍ଷାନହେଲେ ବେଙ୍ଗବେଙ୍ଗୁଲୀ ବିବାହକରିବା, ଭୀମାବିହାକରିବା, ରୋଗପୋକଦାଉରୁ ରକ୍ଷାପାଇବାପାଇଁ ରୋଗବହଲା ପାଳନକରିବା ଭଳି କିଛି ଘଟଣାକୁ ଏହାର ଉଦାହରଣଭାବରେ ଗ୍ରହଣକରାଯାଇପାରେ—

*(କ)ଅକ୍ଷିମୁଠି ବୁଣିବା :*

ଅକ୍ଷୟ ତୃତୀୟା ଦିନ ନୂଆଗଉଣିରେ ଧାନନେଇ କ୍ଷେତର ଐଶାନକୋଣରେ ଚାଷୀମାନେ ଧୂପ, ଦୀପ, ଭୋଗରାଗଦେଇ ମାଟିମାଆକୁ ପୂଜାକରିବା ସହିତ ଗୋଟିଏ କୋଣରେ କିଛି ଧାନବିହନ ବୁଣିଥାଆନ୍ତି । ଏହାକୁ 'ଅକ୍ଷିମୁଠି' କୁହାଯାଏ । ଯଦିଓ, ସେହିଦିନ କିମ୍ବା ତା'ପରବର୍ତ୍ତୀ କିଛିଦିନଭିତରେ ସେ ସେହି କ୍ଷେତରେ ଧାନବୁଣାକାର୍ଯ୍ୟକରିବାର ସମ୍ଭାବନା ନଥିଲେ ମଧ୍ୟ ଅକ୍ଷୟ ତୃତୀୟା ଦିନ 'ଅକ୍ଷିମୁଠି' ବୁଣିଥାନ୍ତି କାରଣ, ଏହି 'ଅକ୍ଷିମୁଠି ବୁଣିବା' ଶୁଭ ତଥା ଏହାଦ୍ୱାରା ଫସଲ ଭଲଅମଳ ହୋଇଥାଏ ବୋଲି ସେମାନେ ବିଶ୍ୱାସ କରନ୍ତି ।

(ଖ)ବେଙ୍ଗବେଙ୍ଗୁଲୀ ବିବାହ :

ବର୍ଷା ହେଉନଥିଲେ ବେଙ୍ଗବେଙ୍ଗୁଲୀ ଯୋଡିକୁ ବାହାଘରକଲେ ବର୍ଷାହୁଏ ବୋଲି ବିଶ୍ୱାସକରାଯାଏ । ଏହା କେବଳ ପଶ୍ଚିମ ଓଡିଶାରେ ନୁହେଁ, ସମଗ୍ର ଓଡିଶା ତଥା ଭାରତର ଅନ୍ୟାନ୍ୟ ରାଜ୍ୟ ଏପରିକି ନେପାଳ, ଏବଂ ବାଲାଂଦେଶରେ ମଧ୍ୟଅନେକ ଲୋକଗୋଷ୍ଠୀରେ ଏହି ପରମ୍ପରା ଅଛି । ଏହି ପରମ୍ପରାରେ ବର୍ଷାହେଉନଥିଲେ ସମ୍ପୃକ୍ତ ଲୋକଗୋଷ୍ଠୀରେ ବେଙ୍ଗବେଙ୍ଗୁଲୀର ବିବାହ ସମ୍ପୃକ୍ତ ଗୋଷ୍ଠୀରେ ପ୍ରଚଳିତ ବିବାହ ପରମ୍ପରା ଅନୁସାରେ ପାଳିତ ହୋଇଥାଏ ।

*(ଗ)ମାଏଟ¨ ମଏଲନକରିବା :*

କୁମ୍ଭାରମାନେ ମାଟିପାତ୍ର ତିଆରିକଲାବେଳେ ମାଟି ଚକଟିବା କାଯ୍ୟପାଇଁ ରଜସ୍ୱଳାନାରୀକୁ ବାରଣକରିଥାନ୍ତି, ଯାହାକୁ ସେମାନେ 'ମାଏଟ¨ ମଏଲ କରନି (ମାଟିକୁ ଅପରିଷ୍କାର)' ବୋଲି କହିଥାନ୍ତି । ସେହିପରି, ରଜସ୍ୱଳାନାରୀକୁ କୁମ୍ଭାରଚକକୁ ମଧ୍ୟଛୁଇଁବାକୁ ବାରଣ କରାଯାଇଥାଏ । ଅନୁରୂପଭାବରେ, କେଉଟମାନେ ମାଛମାରିବାକୁ ବାହାରିଲାବେଳେ ବିଲେଇର ମାଉଁ ଶୁଣିଲେ ଯେଉଁ ଦିଗରେ ବାହାରି ମାଛମାରିବାକୁ ଯାଇଥାଆନ୍ତେ ତାହାର ବିପରୀତଦିଗରେବାହାରି ବୁଲିକି ଯାଇଥାଆନ୍ତି । ନହେଲେ, ଜାଲରେ ସେଦିନ ଠିକ¨ ପରିମାଣରେ ମାଛପଡିବନାହିଁବୋଲି ବିଶ୍ୱାସକରନ୍ତି । କମାରମାନେ ମଧ୍ୟ କମାରଶାଳରେ 'ଯତର(ପବନଦେଉଥିବା ହାତତିଆରି ଉପକରଣ)' ମାଡିବାବେଳେ ରଜସ୍ୱଳାନାରୀକୁ ଅନୁରୂପ ବାରଣ କରିଥାନ୍ତି ।

**୪ଧାର୍ମିକ ., ସାମାଜିକ ରୀତିନୀତି, ଏବଂ ଦେବଦେବୀ ସମ୍ପର୍କିତ ବିଶ୍ୱାସ**

ସାଂସ୍କୃତିକ, ଧାର୍ମିକ, ସାମାଜିକ ରୀତିନୀତି ତଥା ବିଭିନ୍ନ ଦେବଦେବୀଙ୍କୁନେଇ ପ୍ରାୟ ସମସ୍ତ ଲୋକଗୋଷ୍ଠୀରେ ନାନାଧରଣର ବିଶ୍ୱାସ ଦେଖିବାକୁମିଳେ । ଏଠାରେ ଆମର ସମ୍ୟକ୍ ଅବଧାରଣାପାଇଁ ଏ ସମ୍ପର୍କିତ କେତୋଟି ବିଶ୍ୱାସ ବିଷୟରେ ଉଲ୍ଲେଖ କରାଯାଇପାରେ—

*(କ) ସୁନାରୀଡାଳ ଗୁଞ୍ଜିବା :*

ପଶ୍ଚିମ ଓଡିଶାରେ ଶ୍ରାବଣ ମାସର ଅମାବାସ୍ୟା ବା 'ହରାଲି ଉଆସଁ'' ଦିନ ପ୍ରାୟ ପ୍ରତ୍ୟେକଘରର ଦୁଆରମୁହଁର ଛାତରେ 'ସୁନାରୀ ଗଛର ଡାଳ', ଅଞ୍ଚଳଭେଦରେ ବନହଳଦୀ, ଖଏଁସ ଡାଳ ମଧଗୁଞ୍ଜାହୋଇଥାଏ, ଏବଂ ଦୁଆରସାମ୍ନା ମାଟିରେ 'ଲହ୍ବାଗୁଁକମାରଶାଳରେ ତରଳିପଡିଥିବା ଲୌହର ) (ବର୍ଜତିଅଂଶ' ପୋତା ହୋଇଥିବା ଦେଖିବାକୁମିଳେ । ଏସବୁ ଗାଁର ଗଉଡ, ଏବଂ କମାରଙ୍କଦା୍ୱରା ଅନୁଷ୍ଠିତ ହୋଇଥାଏ । ଏପରିକଲେ ରୋଗ, ବିପଦଆପଦ, ସାପ, ସରୀସୃପ, ଓ ଭୁତପ୍ରେତରୁ ରକ୍ଷାମିଳେ ବୋଲି ବିଶ୍ୱାସକରାଯାଏ ।

*(ଖ) ଡୁକେର୍ ଖେଦା :*

ଆଷାଢ ଶୁକ୍ଳପକ୍ଷ ଦ୍ୱିତୀୟା ଦିନଠାରୁ ସପ୍ତପୁରୀ ଅମାବାସ୍ୟା ବା ଭାଦବ୍ର କୃଷ୍ଣପକ୍ଷ ଅମାବାସ୍ୟାଯାଏଁ ଗେଡି ଖେଳ ଆୟୋଜିତ ହୋଇଥାଏ। 'ସପ୍ତପୁରୀ ଆମାବାସ୍ୟା' ଦିନ ସମସ୍ତ ଖେଳାଳୀ ଗେଡିଗୁଡିକୁ ଭାଙ୍ଗିରୁଜି ଏକତ୍ରକରି ଗ୍ରାମବାହାରେଥିବା ଗୋଟିଏ ଉଇହୁଙ୍କାରେ ପୋତିଦେଇଥାନ୍ତି। ଏହା 'ଡୁକେର୍ଖେଦା'ଭାବରେ ପରିଚିତ। ଡୁକେର୍ ରୋଗବଇରାଗର ଦେବୀ। ସେ ଦେବୀ ଗାଁବାହାରକୁ ଚାଲିଗଲେ ତାଙ୍କସାଙ୍ଗରେ ଗ୍ରାମର ସମସ୍ତ ରୋଗବଇରାଗ ମଧ ଚାଲିଯାଏ ବୋଲି ବିଶ୍ୱାସକରାଯାଏ। ସେହିପରି, 'ରୋଗ୍ବହଲା' ପାଳନକରିବା ପଛରେ ମଧ ଏମିତି ଏକ ବିଶ୍ୱାସଅଛି ।ଗାଁର ନରିଆ, ଝାକର 'ରୋଗ୍ଭାର'କୁ ଗ୍ରାମଦୂରବର୍ତ୍ତୀ ଏକ ନିକାଞ୍ଚନସ୍ଥାନରେ ଥିବା ବୃକ୍ଷଡାଳରେ ଓହଳାଇ ଦେଇଆସନ୍ତି। ଏହି 'ରୋଗ୍ଭାର୍'କୁ ସମସ୍ତେ ପୂଜାକରିବା ସହିତ ଏଥିରେ ଅସରପା, ଓଡଶ, ଉକୁଣି, ବାଡିବଗିଚାର ଫସଲ ନଷ୍ଟକାରୀ କୀଟପତଙ୍ଗସବୁକୁ ପକାଇଦେଇଥାନ୍ତି, ଏବଂ ଏପରିକଲେ ରୋଗକୀଟ - ଦୂରହେବା ସହିତ ବାଡିବଗିଚାର ଫସଲ କୀଟଦାଉରୁ ରକ୍ଷାପାଇଥାଏ ବୋଲି ବିଶ୍ୱାସ କରାଯାଏ।

**୫ ପ୍ରାକୃତିକ ଏବଂ-ଅତି .ଆଧିଭୌତିକ ବିଶ୍ୱାସ**

ମଣିଷ ଭିତରେ ଆଦିମକାଳରୁ ଅତିପ୍ରାକୃତିକ ଏବଂ ଆଧିଭୌତିକ ବିଶ୍ୱାସ - ଅଛି। ଚନ୍ଦ୍ର, ସୂର୍ଯ୍ୟ, ଗ୍ରହଅବଧାରଣ ନକ୍ଷତ୍ରକୁନେଇ ଆମଭିତରେ ଅନେକ- ପିଢିପଢିଧରି ବଳବତ୍ତର ଅଛି। ସେହିପରି, ଭୂତପ୍ରେତ ସମ୍ପର୍କରେ କେବଳ ଗ୍ରାମାଞ୍ଚଳନୁହେଁ ସହର ଏବଂ ଶିକ୍ଷିତ ଲୋକଗୋଷ୍ଠୀରେ, ଉଭୟ ଭାରତ ଏବଂ ପାଶ୍ଚାତ୍ୟ ବିକଶିତ ଦେଶରେ ମଧ ଅନେକ ପ୍ରକାରର ବିଶ୍ୱାସ ଦେଖିବାକୁମିଳେ । ଏପରିକି ଆନୁଷ୍ଠାନିକ ଶିକ୍ଷା ଆଉ ଜୀବନଶୈଳୀ ବି ଏହିସବୁ ବିଶ୍ୱାସକୁ ଦୂର କରିପାରିନାହିଁ । ଏଠାରେ ଆଲୋଚନାର ସହଜ ଅବଧାରଣାପାଇଁ କେତୋଟି ଉଦାହରଣ ଉଲ୍ଲେଖନୀୟ—

*(କ) ଅତିପ୍ରାକୃତିକ ବିଶ୍ୱାସ :*

ଦ୍ୱିତୀୟା ଜହ୍ନକୁ ଦର୍ଶନକରିବା ଏବଂ ତାହାକୁ ପ୍ରଣିପାତକରିବା ଶୁଭବୋଲି ମନେକରାଯାଏ ।ସେହିପରି, ଯଦିଓ ଖାଲିଆଖିରେ ଚନ୍ଦ୍ରଗ୍ରହଣ ଏବଂ ସୂର୍ଯ୍ୟପରାଗ ଦେଖିବାପାଇଁ ସମସ୍ତଙ୍କୁ ମନାକରାଯାଏ । ତେବେ, ଗର୍ଭବତୀନାରୀଙ୍କୁ ଏହି ସମୟରେ ବାହାରକୁ ବାହାରିବାପାଇଁ ମଧ ମନାକରାଯାଏ କାରଣ, ଜନ୍ମିତସନ୍ତାନ ଗ୍ରହଣଖଣ୍ଡିଆହେବାର ସମ୍ଭାବନାଥାଏ ବୋଲି ସମ୍ପୃକ୍ତ ଗୋଷ୍ଠୀର ସଦସ୍ୟ ବିଶ୍ୱାସକରିଥାନ୍ତି । ଅନୁରୂପଭାବରେ, ଉଲ୍ କାପାତ ସମୟରେ କୌଣସି ମନସ୍କାମନାକଲେ ତାହା ପୂର୍ଣ୍ଣହୋଇଥାଏ ବୋଲି ମଧକେତେକ ଲୋକଗୋଷ୍ଠୀର ସଦସ୍ୟବିଶ୍ୱାସକରିବା ଦେଖାଯାଏ ।

(ଖ)ଆଧିଭୌତିକ ବିଶ୍ୱାସ :

ପ୍ରାୟ ପ୍ରତ୍ୟେକ ଲୋକଗୋଷ୍ଠୀ ଅନେକ ସଦସ୍ୟ ଡୁମାଦେବତା-, ଭୁତ-ପ୍ରେତ ତଥା'ଡାଆଣି ବା ପାଙ୍ଗନନାଶନ (evil eye)''ପ୍ରତି ବିଶ୍ୱାସକରିବା ଦେଖାଯାଏ । ଏହି ବିଶ୍ୱାସ ଗ୍ରାମାଂଚଳ ତଥା ଅନୁନ୍ନତ ଅଂଚଳରେ ବହୁଳଭାବରେ ଦେଖାଯିବାବେଳେ ସହରାଂଚଳ ତଥା ଆନୁଷ୍ଠାନିକ ଶିକ୍ଷା ଗ୍ରହଣକରିଥିବା ଲୋକଗୋଷ୍ଠୀରେ ମଧ ଅନେକ ପରିମାଣରେ ଦୁର୍ଲଭନୁହେଁ ।

ଡୁମାଧରିବାକେତେକ ଲୋକଗୋଷ୍ଠୀରେ ତଥା ଅଞ୍ଚଳଭେଦରେ କୌଣସି : ସଦସ୍ୟଙ୍କଠାରେ କୌଣସି କାରଣରୁ ଅସ୍ବାଭାବିକତା ଦେଖାଦେଲେ ବା ସ୍ୱାସ୍ଥ୍ୟଗତ ଅସନ୍ତୁଳନ ଆସିଲେ ଡୁମାଧରିଛି ବୋଲି ମନେକରାଯାଇଥାଏ, ଏବଂ ପ୍ରତିକାରସ୍ୱରୂପ ଗୁଣିଆଡାକି ବିଧିବିଧାନ କରାଯାଇଥାଏ । ଏସବୁକୁ କେତେକ ବିଦ୍ୱାନ ଅନ୍ଧବିଶ୍ୱାସବୋଲି କହନ୍ତି କିନ୍ତୁ ସମ୍ପୃକ୍ତ ଗୋଷ୍ଠୀ ବା ସଦସ୍ୟପାଇଁ ଏହା କେବଳ ବିଶ୍ୱାସ ମାତ୍ର । ତେବେ, ଉଲ୍ଲେଖନୀୟ ଯେ ଶିକ୍ଷିତ ଲୋକଗୋଷ୍ଠୀରେ ମଧଏଭଳି ନହେଲେ ବି ଅନ୍ୟଅନେକ ବିଶ୍ୱାସ ଦେଖାଯାଏ ଯାହାକୁ ଆମେ ସେହି ଅର୍ଥରେ ଅନ୍ଧବିଶ୍ୱାସଭାବରେ ଗ୍ରହଣକରିପାରିବା ।'ଅନ୍ଧବିଶ୍ୱାସ' ପରିଭାଷାଟି ଗୋଟିଏ ଗୋଷ୍ଠୀପ୍ରତି ଅନ୍ୟ (Other' is member of dominant group, whose identity considered lacking and who may be subject to discrimination by the in-group' (Baliber 2005, 1)। ସଂସ୍କୃତିର ସମାଲୋଚକ ଏବଂ ପ୍ରଜାତିତତ୍ତ୍ୱବିଦ୍ ମାନେ ଏହି ଅନ୍ୟ ଗୋଷ୍ଠୀର ସଦସ୍ୟଙ୍କ ଅବଧାରଣାପ୍ରତି ଆଶଂକା ପ୍ରକାଶ କରନ୍ତି— ",…how is the other known: is knowledge of the other (always) a form of colonization, domination, violence, or can it be pursued as disinterested truth (Ashcroft et al 2007, 8)'?)ଗୋଷ୍ଠୀର ସଦସ୍ୟଙ୍କ ଏକ ସ୍ୱଅବଧାରଣା ମାତ୍ର-। ତେବେ, ଏହିସବୁ ଅବଧାରଣାପ୍ରତି ବିଶ୍ୱାସକରୁଥିବା ସଦସ୍ୟଙ୍କୁ ଅନେକସମୟରେ ସ୍ୱାସ୍ଥ୍ୟଗତକାରଣରୁ ବହୁମୂଲ୍ୟଦେବାକୁ ପଡିଥାଏ ।

ଡାଆଣୀଭୁତଧରିବାଭଳି ଅନେକ ଲୋକଗୋଷ୍ଠୀରେ କିଛି ସ୍ତ୍ରୀ :ଗୁଣିଆ/ ତଥା ପରୁଷଲୋକଙ୍କୁ ଡାଆଣୀ ଆଖ୍ୟାଦେବା ସହିତ ସେମାନେ ସମାଜର ଅନେକ ଅନିଷ୍ଟସାଧନକରନ୍ତି ବୋଲି ବିଶ୍ୱାସକରାଯାଏ। ଫଳସ୍ୱରୂପ, ସମ୍ପୃକ୍ତ

ବ୍ୟକ୍ତି ବା ମହିଳାଙ୍କୁ ମାନସିକ ଏବଂ ଶାରିରୀକ ଅତ୍ୟାଚାର ସହିବାକୁ ପଡେ । ଏବଂ, ଏହିଧାରା ଯେ ସମ୍ପ୍ରତି ମଧ୍ୟବଳବତ୍ତର ଅଛି ତାହା ଆମେ ପ୍ରତିଦିନ ଖବରକାଗଜରେ ପ୍ରକାଶିତ ଏ ସମ୍ପର୍କିତ ଘଟଣାବଳୀରୁ ଦେଖିବାକୁପାଉଛୁ ।ଏହି ଡୁମାଧରିବା, ଡାଆଣିଲାଗିବା, ପାଙ୍ଗନନାଶନ-, ଆଖିପକାଇବା ଭଳି ବିଶ୍ୱାସଗୁଡିକ ନିଶ୍ଚିତଭାବରେ ଋଣାତ୍ମକ । ଏହି ବିଶ୍ୱାସର ପରିଣାମସ୍ୱରୂପ ସମ୍ପୃକ୍ତ ସଦସ୍ୟଙ୍କୁ ଗୋଷ୍ଠୀର ଅନ୍ୟସଦସ୍ୟଙ୍କଠୁ ଅନେକ ମାନସିକଶାରୀରିକ - ଅତ୍ୟାଚାର ସହିବାକୁପଡିଥାଏ, ଏପରିକି ଜୀବନପ୍ରତି ବିପଦ ମଧ୍ୟଦେଖାଦେଇଥାଏ । ତେବେ, ଏସବୁକୁ ଯେ ଲୋକତତ୍ତ୍ୱରେ ଅଧ୍ୟୟନ କରାଯାଇନପାରେ ଏହା କହିବା ଭ୍ରମାତ୍ମକ, ବରଂ ଏଗୁଡିକର ଅଧ୍ୟୟନକରିବା ସହିତ ଏହାର ଋଣାତ୍ମକ ଏବଂ ଘାତକଦିଗପ୍ରତି ସଚେତନତା ସୃଷ୍ଟିକରିବା ଲୋକତତ୍ତ୍ୱବିଦ୍ ତଥା ବିଦ୍ୱାନମାନଙ୍କର କର୍ତ୍ତବ୍ୟ, ଏହାକୁ କେବଳ ଅନ୍ଧବିଶ୍ୱାସବୋଲି ବା ମୁର୍ଖ, ଅଶିକ୍ଷିତ, ଏବଂ ଗ୍ରାମ୍ୟଜନତାର ବିଶ୍ୱାସଭାବରେ ସୀମିତରଖିବା ଉଚିତ ମନେକରାଯାଇନପାରେ ।

## III. ବିଶ୍ୱାସର ସ୍ୱରୂପ, ଏବଂ ଏହାର ବିଭିନ୍ନ ଦିଗ

ଲୋକତତ୍ତ୍ୱବିଦମାନ (Malinowski 1948; Quine, and Orman 1970; Levi 1991) ବିଶ୍ୱାସର ବିଭିନ୍ନସ୍ୱରୂପ ତଥା ଏହାର ବିଭିନ୍ନଦିଗ ଉପରେ ଆଲୋଚନା କରିଛନ୍ତି । ଉପର୍ଯୁ¥କ୍ତ ବିଶ୍ୱାସଗୁଡିକୁ ଅଧାରକରି ଆମେ ଏଠାରେ ଏଗୁଡିକର ସ୍ୱରୂପ ତଥା ଏହାର ବିଭିନ୍ନ ଆୟାମ ସମ୍ପର୍କରେ ଲୋକତାତ୍ତ୍ୱିକଦୃଷ୍ଟିରୁ ଆଲୋଚନାକରିପାରିବା—

*(କ) ବିଶ୍ୱାସର ସ୍ୱରୂପ :*

ବିଶ୍ୱାସର ବିଭିନ୍ନସ୍ୱରୂପ ଆମେ ଦେଖିବାକୁ ପାଇଥାଉ । କେତେବେଳେ ବିଶ୍ୱାସ ଏକ ଘଟଣାପ୍ରକ୍ରିୟା ଭାବରେ ଆମ ସାମ୍ନାକୁ ଆସିଥାଏ ତ କେତେବେଳେ ଏହା କୌଣସି ଏକ ଘଟଣା ମଧ୍ୟରୁ ଜନ୍ମ ନେଇଥାଏ । ଅନୁରୂପଭାବରେ, ଅନେକ ବିଶ୍ୱାସ ଆମର ସାମାଜିକ ରୀତିନୀତିଆଧାରିତ ହୋଇଥାଏ । ସେହିପରି, କେତେକ ବିଶ୍ୱାସ ପ୍ରକ୍ରିୟାକୁ ଆମେ ଗ୍ରହଣକରିନଥାଉ କିନ୍ତୁ ଆମର ନିକଟତମ ସଦସ୍ୟଆମକୁ ସେପରି କରିବାକୁ ପ୍ରରୋଚିତ କରିଥାନ୍ତି । ବେଳେବେଳେ ଦେଖାଯାଏ ଯେ ଆମ ଗୋଷ୍ଠୀରେ ଗୋଟିଏ ଘଟଣାପ୍ରତି ସେମିତି କିଛି ଅବଧାରଣାନାହିଁ ତଥାପି ଆମେ ଆମଭିତରେ ଏକ ନିର୍ଦ୍ଦିଷ୍ଟ ଅବଧାରଣା ସୃଷ୍ଟିକରିବା ସହିତ ତାହାକୁ ବିଶ୍ୱାସକରୁ; ଆମର ଶିକ୍ଷା, ପରିବେଶ, ତଥା ପରିସ୍ଥିତିରୁ ଏହି ପ୍ରକାରର ଅବଧାରଣା ଆମ ଭିତରେ ଦେଖାଯାଇଥାଏ ଯାହାକୁ 'ବିଶ୍ୱାସର ବିକାଶ'ଭାବରେ ଲୋକତତ୍ତ୍ୱରେ ଗ୍ରହଣକରାଯାଏ । ଅତଏବ, ବିଶ୍ୱାସର ବିଭିନ୍ନସ୍ୱରୂପକୁ ଏଠାରେ ନିମ୍ନଭାବରେ ଆଲୋଚନା କରାଯାଇପାରେ—

*(ଖ) ପ୍ରକ୍ରିୟା (Act):*

କାଉ ରାବିବା ଏକ ସ୍ୱାଭିବିକ ପ୍ରକ୍ରିୟା । କିନ୍ତୁ ତାହାକୁନେଇ ଆମେ ବିଭିନ୍ନ ଅବଧାରଣା ସୃଷ୍ଟି କରିଥାଉ ଯେ, କିଛି ଖବରଆସିବ, କେହି ଅତିଥିଆସିବେ । ସେହିପରି, ଅନେକ ସମୟରେ ଆମେ କଥାବାର୍ତ୍ତା କଲାବେଳେ ଝିଟିପିଟିଟିଏ ଟିକ୍‌ଟିକ୍‌କରିବା ମଧ୍ୟଏକ ସାଧାରଣ ପ୍ରକ୍ରିୟା; କିନ୍ତୁ, ଆମେ ସେହି ପ୍ରକ୍ରିୟାରୁ ଆମର ପାରମ୍ପରିକ ଅବଧାଣାକୁ ଆଧାରକରି ମନେକରିଥାଉ ଯେ ଯାହାକୁହାଗଲା ତାହା ସତ । ଅତଏବ, ଏହିପରି ଅନେକ ସାଧାରଣ ଏବଂ ସ୍ୱାଭାବିକ ପ୍ରକ୍ରିୟାରୁ ଆମେ ଆମର ବିଶ୍ୱାସ ନିର୍ମାଣ କରିଥାଉ।

*(ଗ) ଘଟଣାକ୍ରମ* (Accomplishment) :

ଆମେ ଯାତ୍ରା କଲାବେଳେ ରାସ୍ତାସାମ୍ନାକୁ ବିଲେଇଟିଏ ଆସିବା ଏକ ଘଟଣାକ୍ରମ, କିମ୍ବା ଛୋଟଶିଶୁଟିଏ ରାତିରେ ଶୋଇବାଖଟରୁ ପଡିଯିବା ଏକ ଦୁର୍ଘଟଣା ହୋଇପାରେ । ଅନୁରୂପଭାବରେ, କୌଣସି ଶୁଭକାଯ୍ୟବେଳେ ଛିଙ୍କ ଆସିବା, ତେଲ ଲଗାଇଲାବେଳେ ତେଲ ବୋତଲ ଗଡିଯାଇ ତେଲ ମାଟିରେ ପଡିଯିବା ପ୍ରଭୃତି ମଧ୍ୟଏକଏକ ଘଟଣା, କିନ୍ତୁ ଆମେ ଏଥିରୁ ଆମର ପାରମ୍ପରିକ ଦୃଷ୍ଟିକୋଣରୁ ବିଭିନ୍ନ ଅବଧାରଣା ସୃଷ୍ଟି କରିଥାଉ ଆଉ ସେସବୁକୁ ବଳବତ୍ତର ରଖୁ । ଆମେ ଆମର ଦୈନନ୍ଦିନ ଜୀବନର ନାନା ଘଟଣାଦୁର୍ଘଟଣାକୁ - ଆଧାରକରି ମଧ୍ୟବିଭିନ୍ନ ଅବଧାରଣାର ବିକାଶ କରିଥାଉ ଯେପରି— କେହିକେହି ଦୋକାନୀ ନିର୍ଦ୍ଦିଷ୍ଟ ଏକ ଗ୍ରାହକ ପ୍ରଥମେ ବଇନିକଲେ ସେଦିନ ଭଲବେପାର ହେବବୋଲି ଭାବିବା ।

*)ଘ (ରୀତିନୀତି* (Rituals):

ଆମର ସାମାଜିକ ସାଂସ୍କୃତିକ ରୀତିନୀତିରେ ଅନେକ ଅବଧାରଣା ପରମ୍ପରାକ୍ରମେ ଚାଲିଆସିଛି, ଏହାକୁ ଆମେ ସହଜଭାବରେ ପ୍ରତ୍ୟାଖ୍ୟାନକରିବା ସମ୍ଭବନୁହେଁ । ଜନ୍ମମୃତ୍ୟୁ--ବିବାହ ଅବସରରେ ପାଳନ କରାଯାଉଥିବା ବିଭିନ୍ନ କ୍ରିୟାକର୍ମ ତଥା ବିଭିନ୍ନ ପର୍ବପର୍ବାଣି ଅବସରରେ ପାଳନକରାଯାଉଥିବା ଅନେକ ନୀତିନିୟମଜନିତ ଆମର ଅବଧାରଣା, ଆମର ବିଶ୍ୱାସକୁ ଆମେ ଉପେକ୍ଷା କରିପାରିନଥାଉ । ଅତଏବ, ଆମର ସାମାଜିକ ରୀତିନୀତି, ସାଂସ୍କୃତିକ ପ୍ରକ୍ରିୟା ଆମଭିତରେ ଅନେକ ବିଶ୍ୱାସ ସୃଷ୍ଟିକରିବାରେ ସହାୟକ ହୋଇଥାଏ ।

*(ଙ) ଆରୋପଣ* (Incorporation) :

ବେଳେବେଳେ ଦେଖାଯାଏ ଆମେ ଆମର ଶିକ୍ଷା ତଥା ସ୍ୱ-ଅବଧାରଣାକୁନେଇ ଅନେକ ପ୍ରକ୍ରିୟାକୁ ବିଶ୍ୱାସ କରିବାକୁ ପ୍ରସ୍ତୁତନଥାଉ କିନ୍ତୁ ଆମ ସମାଜତଥା ଆମ ପରିବାରର ନିକଟତମ ସଦସ୍ୟଆମକୁ ସେସମ୍ପର୍କରେ ବାରମ୍ବାର ପ୍ରରୋଚିତ କରିବା ସହିତ ସେସବୁକୁ ବିଶ୍ୱାସ କରିବାକୁ ଏକରକମ ବାଧ୍ୟକରିଥାନ୍ତି, ଅନେକ ସମୟରେ ଆମର ପରିବେଶ ଓ ପରିସ୍ଥିତି ମଧ୍ୟଏଥିପାଇଁ ଆମକୁ ବାଧ୍ୟକରିଥାଏ । ଉଦାହରଣସ୍ୱରୂପ, ଅମାବାସ୍ୟା ଏବଂ ପୂର୍ଣ୍ଣିମାଦିନ ଘରଛାଡି ଦୂରସ୍ଥାନକୁ ଯାତ୍ରାକରିବା ଅଶୁଭ । ଜଣେ ସଦସ୍ୟଏହାକୁ

ଗ୍ରହଣକରିନପାରନ୍ତି କିନ୍ତୁ ପରିବାରର ଅନ୍ୟମାନେ ଏହାକୁ ବିଶ୍ୱାସକରୁଥିଲେ ସେମାନେ ତାହାଙ୍କୁ କେବେବି ଯାତ୍ରାକରିବାକୁ ଦେବେନାହିଁ । ଅନୁରୂପଭାବରେ, ପଶ୍ଚିମ ଓଡିଶାରେ ନୂଆଖାଇ ପୂର୍ବରୁ କେହି ନୂଆଚାଉଳର ଭାତ ଖାଆନ୍ତିନାହିଁ, ଏ କ୍ଷେତ୍ରରେ ଜଣେ ଉଚ୍ଚଶିକ୍ଷିତ ବୋହୂଟିଏ ନୂଆଚାଉଳ ରୋଷେଇକଲେ ଅସୁବିଧା କ'ଣ ଭାବି ଯଦି ସେପରିକରିବାକୁ ଯିବ ତେବେ ପରିବାରର ଅନ୍ୟସଦସ୍ୟକେବେ ବି ତାହା କରିବାକୁଦେବେନାହିଁ। ଅତଏବ, କିଛିକିଛି ଅବଧାରଣା ଆମ ଉପରେ ଆମ ଗୋଷ୍ଠୀର ଅନ୍ୟସଦସ୍ୟଆରୋପିତ ମଧ୍ୟକରିଥାନ୍ତି, ଏବଂ ଏହାକୁ ପ୍ରତ୍ୟାଖ୍ୟାନକରିବା ଅନେକ ସମୟରେ ସମ୍ଭବହୋଇନଥାଏ ।

*(ଚ)ଆହରଣ (Acquisition):*

ବିଶ୍ୱାସର ଆହରଣ ବା ପରିବେଶ ପରିସ୍ଥିତି ଓ ପ୍ରସଙ୍ଗକ୍ରମେ ଅନୁରୂପ ନୂତନ ବିଶ୍ୱାସର ବିକାଶ ଆମ ପାରମ୍ପରିକ ଅବଧାରଣାରେ ଆମର ଶିକ୍ଷା ତଥା ଅନ୍ୟଗୋଷ୍ଠୀ ଅନ୍ୟସଂସ୍କୃତିର ଅନ୍ତର୍ଗ୍ରହଣକୁ ସୂଚାଇଥାଏ, ତଥା ଆମରଚିନ୍ତା ଆମର ନିର୍ଦ୍ଦିଷ୍ଟ ଦୃଷ୍ଟିକୋଣଗତ ସ୍ୱ ଅବଧାରଣାକୁ ପ୍ରକାଶିତ କରିଥାଏ-। ପ୍ରବନ୍ଧର ପ୍ରାରମ୍ଭରେ ଧନ୍ ତେରାସରେ ସୁନାକିଣିବା ଏବଂ ଗୃହରେ 'ଲାଫିଙ୍ଗ୍ ବୁଦ୍ଧ'ରଖିବା କଥା ଉଲ୍ଲେଖକରାଯାଇଛି ଯାହା ଆମର ଶିକ୍ଷା ତଥା 'ଆହରିତ ବିଶ୍ୱାସ'ର ପରିଚାୟକ । ସେହିପରି, ଶୁକ୍ରବାର ଦିନ ସନ୍ତୋଷୀ ମାଆଙ୍କୁ ବିଶ୍ୱାସକରି ଖଟାନଖାଇବା ମଧ୍ୟଓଡିଶାର ଲୋକଗୋଷ୍ଠୀ ପାଇଁ ଏକ ଆହରିତ ବିଶ୍ୱାସ । ଅତଏବ, ଗୋଟିଏ ଲୋକଗୋଷ୍ଠୀ ଆଉ ଗୋଟିଏ ଲୋକଗୋଷ୍ଠୀର ସଂସ୍ପର୍ଶରେଆସିଲେ ପରସ୍ପର ମଧ୍ୟରେ ବିଶ୍ୱାସର ଆହରଣ ମଧ୍ୟସମ୍ଭବହୋଇଥାଏ ।

## IV. ବିଶ୍ୱାସ ପ୍ରକ୍ରିୟାର ବିଭିନ୍ନ ଆୟାମ

ବିଶ୍ୱାସର ବିଭିନ୍ନ ଆୟାମ ସମ୍ପର୍କରେ ଲୋକତତ୍ତ୍ୱବିଦ୍ମାନେ ସେମାନଙ୍କ ଅଧ୍ୟୟନରେ ଉଲ୍ଲେଖ କରିଛନ୍ତି (Casy 2012; Rogers 1970; Polling, and Evans 2004) । ବିଭିନ୍ନ ପ୍ରସଙ୍ଗରେ ଆମ ଭିତରେ ବିଶ୍ୱାସର ନିର୍ମାଣ ହୋଇଥାଏ । ସେହିପରି, ବିଶ୍ୱାସର ପ୍ରକରଣ ପାଇଁ ବିଭିନ୍ନ ପ୍ରକାରକର ଭୂମିକା ଦେଖିବାକୁ ପାଇଥାଉ । ଏବଂ, ଏହା ଆମର ସାମାଜିକ ସାଂସ୍କୃତିକ ଜୀବନକୁ ବହୁଭାବରେ ପ୍ରଭାବିତ କରିଥାଏ । ଏହି ପ୍ରଭାବ ଯେତେବେଳେ ନକରାତ୍ମକ ହୋଇଥାଏ ଏହାର ନିବାରଣ ପାଇଁ ଆମେ ପ୍ରଚେଷ୍ଟା କରିଥାଉ । କେତେକ କ୍ଷେତ୍ରରେ ଏଥିପାଇଁ ବିଶେଷ ବ୍ୟକ୍ତିଙ୍କ ଭୂମିକା ଅନିବାର୍ଯ୍ୟ ହୋଇଥାଏ ଯାହାଙ୍କୁ ଆମେ ନିବାରକ ବା ନିବାରଣକାରୀ ଭାବରେ ଗ୍ରହଣକରିପାରିବା; ଅତଏବ, ବିଶ୍ୱାସର ବିଭିନ୍ନ ଆୟାମକୁ ନିମ୍ନଭାବରେ ଆଲୋଚନା କରିପାରିବା—

(କ)ପ୍ରସଙ୍ଗ (Occasion or Context):

ପ୍ରସଙ୍ଗକୁ ଆମେ ବିଶ୍ୱାସର ମୂଳ ଉତ୍ସଭାବରେ ଗ୍ରହଣକରିପାରିବା । ଉଦାହରଣସ୍ୱରୂପ, କାଉରାବିବା ଏକ ପ୍ରକ୍ରିୟା, କିନ୍ତୁ କାଉଟିଏ ରାବିଲେ ହୁଏତ କେହି ଧ୍ୟାନ ଦେଇନପାରେ ତେବେ, ଯଦି ସେଇଠି କେହି ଜଣେ ତାହାକୁ ଅନୁଧ୍ୟାନକରିବା ସହିତ କହେ ଯେ, 'ଆଜି କାଉରାବୁଛି କେହି ଆସିପାରେ ବା କିଛି ଖବର ମିଳିପାରେ' ସେଇଠାରେ ଏକ ପ୍ରସଙ୍ଗର ଉପôଲି ହୁଏ ବା ଘଟଣାଟି ପ୍ରାସଙ୍ଗିକ ହୋଇପଡେ । ଆମେ ମଧ୍ୟପାରମ୍ପରିକ ଭାବରେ ଏଥିପ୍ରତି ଅବଗତ, ଏଣୁ ଆମେ ସେତେବେଳେ ଭାବିଥାଉ ଯେ ଏପରିକିଛି ହେବ । ହାତରୁ ବାସନ ଖସିପଡିଗଲେ ମଧ୍ୟଅନୁରୂପ ଏକ ଅବଧାରଣା କେତେକ ଲୋକଗୋଷ୍ଠୀରେ ସୃଷ୍ଟି ହୋଇଥାଏ ।

(ଖ)ପ୍ରକାରକ *(Activator ):*

କାଉ ରାବିବା ଏକ ପ୍ରକ୍ରିୟା ଯେଉଁଠି ପ୍ରକାରକ ହେଉଛି କାଉ । ସେହିପରି, ବିଲେଇଟିଏ ରାସ୍ତା ଅବରୋଧକରିବାରେ ଯେଉଁ ବିଶ୍ୱାସ ଆମ ମନରେ ଆସେ ତାହାର ପ୍ରକାରକହେଉଛି ବିଲେଇ । କିନ୍ତୁ ଶୋଇବା ଖଟରୁ ଛୋଟ ଶିଶୁଟି ପଡିଯିବାକ୍ଷେତ୍ରରେ ପ୍ରକାରକ ହେଉଛନ୍ତି ତାହା ଅଶୁଭ ବୋଲି ଘୋଷଣା କରୁଥିବା ସମ୍ପୃକ୍ତ ଲୋକଗୋଷ୍ଠୀର ସଦସ୍ୟ । ସେହିପରି, ରାଣପକାଇବା କ୍ଷେତ୍ରରେ ରାଣଦେଉଥିବା ବ୍ୟକ୍ତି ହିଁ ବିଶ୍ୱାସର ପ୍ରକାରକ ବା ପ୍ରକରଣକାରୀ । ଅତଏବ, ଯେଉଁ ବସ୍ତୁ, ବ୍ୟକ୍ତି, ବା ପ୍ରାଣୀ ଆମଭିତରେ ବିଶ୍ୱାସସୃଷ୍ଟିର କାରଣ ହୋଇଥାଆନ୍ତି ତାହାଙ୍କୁ ଆମେ ସମ୍ପୃକ୍ତ ବିଶ୍ୱାସର ପ୍ରକାରକଭାବରେ ଗ୍ରହଣକରିପାରିବା । ଆମକୁ ଏ ପ୍ରସଙ୍ଗରେ ମନେରଖିବାକୁହେବ ଯେ ବିଶ୍ୱାସର ଏ ପ୍ରକରଣ ଅନେକତଃ ପାରମ୍ପରିକ କୌଣସି ବ୍ୟକ୍ତି ଏହାକୁ ତତ୍କାଳୀନ ତଥା ନୂତନଭାବରେ ସୃଷ୍ଟି କରିବାରେ ସକ୍ଷମ ହୋଇନଥାଆନ୍ତି । ତେବେ, କେତେକ ଘଟଣା ଓ ପ୍ରକ୍ରିୟାରେ ପ୍ରସଙ୍ଗକ୍ରମେ ଏହା ନୂତନଭାବରେ ମଧ୍ୟସୃଷ୍ଟିହୋଇଥାଏ ଏବଂ, ଏଥିପ୍ରତି ସମ୍ପୃକ୍ତ ଲୋକଗୋଷ୍ଠୀର ଅନ୍ୟ ସଦସ୍ୟଙ୍କ ସହମତି ଆବଶ୍ୟକ । ଶୁକ୍ରବାର ଦିନ ଖଟାନଖାଇବାକୁ ଆମେ ଏହାର ପ୍ରକୃଷ୍ଟ ଉଦାହରଣଭାବରେ ନେଇପାରିବା ।

(ଗ)ପ୍ରଭାବ (Contraindication):

କୌଣସି ପ୍ରକ୍ରିୟା ବା ଘଟଣାକ୍ରମେ ଯାହା ହୁଏ, ବା ହେବାର ସମ୍ଭାବନାଥାଏ ବୋଲି ଆମେ ବିଶ୍ୱାସକରିଥାଉ ତାହାହେଉଛି ଆମ ବିଶ୍ୱାସର ପ୍ରଭାବ । ଯେପରି, ବିଲେଇ ରାସ୍ତାସାମ୍ନାକୁ ଆସିଲେ ଆଗକୁ ଅଘଟଣ ଘଟିପାରେ, ବା କାଉରାବିଲେ ଭଲ କିମ୍ବା ମନ୍ଦ ଖବରମିଳିପାରେ, ଘରକୁ ଅତିଥି ଆସିପାରନ୍ତି । ଏଠାରେ ଉଲ୍ଲେଖନୀୟ ଯେ, ଏହା ଆମ ସମସ୍ତଙ୍କର ବିଶ୍ୱାସ ଏପରି ଏକଥା ମଧ୍ୟକୁହାଯାଇନପାରେ । ପୁନଶ୍ଚ, ଗୋଟିଏ ପ୍ରକ୍ରିୟା ବା ଘଟଣାର ପ୍ରଭାବ ସବୁବେଳେ ନକରାତ୍ମକ ଏହା ମଧ୍ୟନୁହେଁ ସ୍ଥଳବିଶେଷରେ ତଥା ପ୍ରସଙ୍ଗକ୍ରମେ ଏହା ସକାରାତ୍ମକ ମଧ୍ୟହୋଇଥାଏ ଯେପରି— ଦ୍ୱିତୀୟା

ଜହ୍ନ ଦର୍ଶନ, ଯାତ୍ରାସମୟରେ ପୂର୍ଣ୍ଣକୁମ୍ଭ ଦର୍ଶନ ସେହିପରି— ଗୁରୁବାର ଦିନ ଟେରା ପକ୍ଷୀ ଦେଖିବା ।

(ଘ)ନିବାରଣ) ବାରଣ/Resolution/Restriction):

କୌଣସି ପ୍ରକ୍ରିୟା ବା ଘଟଣାକ୍ରମେ ଯେତେବେଳେ ଆମଭିତରେ ନକାରାତ୍ମକ ଅବଧାଣା ସୃଷ୍ଟିହୋଇଥାଏ ସେତେବେଳେ ଆମେ ତାହାକୁ ଦୂରକରିବାକୁ ଚେଷ୍ଟା କରିଥାଉ । ଯାତ୍ରାକାଳରେ ବିଲେଇ ସାମ୍ନାକୁଆସିଲେ ଆମେ ଭାବୁ ଆଗକୁ କିଛି ଦୁର୍ଘଟଣା ଘଟିପାରେ, ଅତଏବ ଟିକିଏ ଅଟକିଯାଉ, ନହେଲେ ଟିକିଏ ପଛକୁ ବୁଲିପଡିଥାଉ । ସେହିପରି, ଶୋଇବା ଖଟରୁ ଶିଶୁଟି ପଡିଗଲେ ଯେଉଁ ଅମଙ୍ଗଳହେବାର ଆଶଙ୍କା କରାଯାଏ, ତାହାର ନିବାରଣ ପାଇଁ ସାତଘରୁ ପାଣିଆଣି ତାକୁ ଗାଧୋଇଦେବା ହେଉଛି ଏହାର ନିବାରଣ । ତେବେ, ସମସ୍ତ ଘଟଣା ପ୍ରକ୍ରିୟାରେ ନିବାରଣଥାଏ ତାହାନୁହେଁ, କେତେକସ୍ଥଳରେ କେବଳ 'ବାରଣ )restriction or taboo)"ହିଁ ଥାଏ । ମନେକରନ୍ତୁ, ମାଟିରେ ଅଙ୍ଗାରରେ ଲେଖିବା ବା ଗାରକାଟିବା ଅଶୁଭବୋଲି ବିବେଚନା କରାଯାଏ; କେହିଜଣେ ଯଦି ଗାରକାଟିଲା ତେବେ ମୂଳତଃ ଏହାକୁ କେବଳ ବାରଣ ହିଁ କରାଯାଏ ନଚେତ୍ ତାହାକୁ ତତକ୍ଷଣାତ୍ ଲିଭାଇଦିଆଯାଇଥାଏ । ସେହିପରି, ପନିପରିବାକୁ ତର୍ଜନୀ ଦେଖାଇଲେ ତାହା ପଚିଯାଏ ବୋଲି ବିଶ୍ୱାସକରାଯାଏ, ଏବଂ ଏଥିପାଇଁ ବାରଣକରାଯାଇଥାଏ । କିନ୍ତୁ କେହିଜଣେ ଯଦି ତର୍ଜନୀ ଦେଖାଇଦିଏ ତେବେ, ସେଥିପାଇଁ କୌଣସି ନିବାରଣ ବିଧିନଥାଏ ।

## V. ବିଶ୍ୱାସ ପରିବେଷଣ :(Performance of Belief)

ଲୋକଧାରାର ପ୍ରତ୍ୟେକ ଉପାଦାନ ଆଦାନପ୍ରଦାନ ତଥା ପରିବେଷଣ ଉପରେ ନିର୍ଭର କରେ । ପ୍ରତ୍ୟେକ ଲୋକଗୋଷ୍ଠୀରେ ପ୍ରଚଳିତ ବିଶ୍ୱାସ ଏକଏକ ପରିବେଷଣ ମଧ୍ୟରେ ହିଁତାହା ସମକାଳୀନ ହୋଇଥାଏ ତଥା ତାହାର ଗୁରୁତ୍ୱ ରହିଥାଏ । ପ୍ରତ୍ୟେକ ଲୋକଗୋଷ୍ଠୀରେ ଆମେ ବ୍ୟକ୍ତିଗତ ଏବଂ ସାମାଜିକ ଭାବରେ ବିଶ୍ୱାସ ପ୍ରକରଣ ସହିତ ପାଳନ ଏବଂ ପରିବେଷଣ ଦେଖିବାକୁ ପାଇଥାଉ । ସେହିପରି, ଅନେକ ରୀତିନୀତିଗତ ବିଶ୍ୱାସ ତଥା ସାମାଜିକ କର୍ମକର୍ମାଣିଆଧାରିତ ବିଶ୍ୱାସର ଧାରା ଦେଖିବାକୁମିଳେ । ସମ୍ପ୍ରତି ଲୋକତତ୍ତ୍ୱବିଦ୍ୱାନମାନେ ଲୋକଧାରାର ଅନ୍ୟ ଉପାଦାନ ଭଳି ବିଶ୍ୱାସର ମଧ୍ୟ ପରିବେଷଣ ଅଧ୍ୟୟନ ପ୍ରତି ଗୁରୁତ୍ୱପ୍ରଦାନକରୁଛନ୍ତି କାରଣ— *"performance theory to the study of folk belief in order to get at the ways in which expressions of belief do more than simply reflect worldview but actually help to reconstruct the culture itself. Folk belief as part of a dynamic, ongoing tradition is not static but continually undergoing change as* individuals adapt received knowledge to specific circumstances' (Mullen 2011, 210) । ଏଠାରେ ବିଶ୍ୱାସର ପରିବେଷଣ ସହିତ ଏହାର ବିଭିନ୍ନ ଆୟାମ ତଥା ନିବାରଣ ପ୍ରକ୍ରିୟା ଉପରେ ସଂକ୍ଷେପରେ ଆଲୋଚନା କରିପାରିବା—

ବ୍ୟକ୍ତିଗତ ଏବଂ ଗୋଷ୍ଠୀଗତ ପରିବେଷଣ (Beliefs as an act of individual and community): ଗୋଟିଏ ଲୋକଗୋଷ୍ଠୀରେ ଆମେ ଉଭୟ ବ୍ୟକ୍ତିଗତ ଏବଂ ସାମାଜିକସ୍ତରରେ ବିଭିନ୍ନ ବିଶ୍ୱାସର ପ୍ରଚଳନ ଦେଖିବାକୁ ପାଇଥାଉ । ପ୍ରକୃତରେ, ବିଶ୍ୱାସ ସବୁବେଳେ ସମ୍ପୃକ୍ତ ଲୋକଗୋଷ୍ଠୀକୁ ଆଧାରକରିଥାଏ, ଅତଏବ ଏହା ପ୍ରାୟତଃ ଗୋଷ୍ଠୀଗତ । ତେବେ, ଅନେକ ବିଶ୍ୱାସର ପରିପାଳନ, ପରିବେଷଣ ସମ୍ପୃକ୍ତ ବ୍ୟକ୍ତିବିଶେଷ ଉପରେ ହିଁନିର୍ଭର କରିଥାଏ । ଉଦାହରଣସ୍ୱରୂପ, ଯାତ୍ରାକାଳରେ ବିଲେଇଦେଖିଲେ ଟିକିଏ ପଛକୁବୁଲିପଡିବାକୁ କେହିକେହି ଗୁରୁତ୍ୱ ଦେଇନପାରନ୍ତି, ସେହିପରି ଗୋଟିଏ ଭୌଗୋଳିକ ପରିସରରେ ଶୁକ୍ରବାର ଦିନ ଖଟାନଖାଇବା ମଧ୍ୟ ଏକ ବ୍ୟକ୍ତିଗତ ବିଶ୍ୱାସ । କିନ୍ତୁ, ନୂଆଖାଇ ପୂର୍ବରୁ ନୂଆଚାଉଳର ଭାତ ନଖାଇବା, କାଉରାବିଲେ ଭଲ କିମ୍ବା ମନ୍ଦ ଖବର ମିଳିବାର, ଘରକୁ ଅତିଥି ଆସିବାର ସମ୍ଭାବନାଥିବା ସମ୍ପୃକ୍ତ ସାମାଜିକ ଗୋଷ୍ଠୀର ବ୍ୟକ୍ତିଗତ ବିଶ୍ୱାସନୁହେଁ ପ୍ରାୟ ସଦସ୍ୟଙ୍କ ଭିତରେ ଏହି ଅବଧାରଣା ଆମେ ଦେଖିବାକୁ ପାଇଥାଉ ।

*(କ)ରୀତିନୀତିଗତ ପରିବେଷଣ (Belief performance related to Rituals):*

ପ୍ରତ୍ୟେକ ଲୋକଗୋଷ୍ଠୀରେ ପର୍ବପର୍ବାଣି, ସାମାଜିକ ରୀତିନୀତି ପାଳନ ସମୟରେ ଅନେକ ପ୍ରକ୍ରିୟା ବିଶ୍ୱାସ ଆଧାରିତ ହୋଇଥାଏ । ଏହା ପ୍ରାୟତଃ ଗୋଷ୍ଠୀଗତ ଏବଂ ଏକପ୍ରକାର ବାଧ୍ୟତାମୂଳକହେବାସହ ଏହାକୁ ଉପେକ୍ଷାକରିବା ବେଳେବେଳେ ଅସମ୍ଭବ । ବିହନଛିନା ଦିନ 'ବିହନ ଛିନିବା', ମୃତବ୍ୟକ୍ତିର ଶୁଦ୍ଧିକ୍ରିୟାରେ ବିଭିନ୍ନ ଲୋକଗୋଷ୍ଠୀର ସଦସ୍ୟ 'ମୁଣ୍ଡନ କରେଇବା', ପଶ୍ଚିମ ଓଡିଶାରେ ନୂଆଖାଇ ଦିନ ନବାନ୍ନକୁ ନିଜର ପିତୃପୁରୁଷା, ଡୁମା ଦେବତାକୁ ପ୍ରଥମେ-'ଅର୍ପଣ କରିବା', କେତେକ ଗୋଷ୍ଠୀରେ ଗାଈଶାଳ, ରୋଷେଇ ଘରେ 'ରଜସ୍ୱଳା ନାରୀର ପ୍ରବେଶ ଜନିତ ନିଷେଧାଜ୍ଞା'— ଏହିସବୁ ବିଶ୍ୱାସର ପାଳନ ବା ପରିବେଷଣକୁ ଆମେ ରୀତିନୀତିଗତ ପରିବେଷଣ ଭାବରେ ଗ୍ରହଣ କରିପାରିବା ।

)*ଖ (ଆଙ୍ଗିକ ପରିପ୍ରକାଶ* (Physical activities related to belief performances):

ଗାଈଶାଳ, ରୋଷେଇ ଘରେ 'ରଜସ୍ୱଳା ନାରୀର ପ୍ରବେଶ ଜନିତ ନିଷେଧାଜ୍ଞା', ନୂଆଖାଇ ଦିନ ନିଜର ପିତୃପୁରୁଷା, ଡୁମା ଦେବତାକୁ ପ୍ରଥମେ-'ନବାନ୍ନ ଅର୍ପଣକରିବା', ମୃତବ୍ୟକ୍ତିର ଶୁଦ୍ଧିକ୍ରିୟାରେ ବିଭିନ୍ନ ଲୋକଗୋଷ୍ଠୀର ସଦସ୍ୟ 'ମୁଣ୍ଡନ କରେଇବା' ଏକଏକ ଆଙ୍ଗିକ ପରିପ୍ରକାଶ ବା ପ୍ରକ୍ରିୟା ଯୋଉ

ମାଧ୍ୟମଦେଇ ଆମେ ଆମର ବିଶ୍ୱାସର ପ୍ରଦର୍ଶନ ଓ ପ୍ରକରଣ କରିଥାଉ । ସେହିପରି, 'କିରିଆ ଭାଙ୍ଗିବା' ପାଇଁ ଓଳିତଳେ ଠିଆହୋଇ ପାଣିପକେଇବା, ବିଲେଇ ସାମ୍ନାକୁଆସିଲେ ଟିକିଏ ଅଟକିଯିବା, ନହେଲେ ଟିକିଏ ପଛକୁ ବୁଲିପଡି ପୁଣି ଗନ୍ତବ୍ୟ ପଥରେ ବାହାରିବା ଆଦି ବିଶ୍ୱାସ ପରିବେଷଣର ଏକଏକ ଆଙ୍ଗିକ ପରିପ୍ରକାଶ ।

*(ଗ) ଭାଷିକ, ପରାଭାଷିକ-, ନୈର୍ବାଚିକ ପରିପ୍ରକାଶ* (Linguistic, Para-linguistic, and non-verbal expressions related to belief performances):

ରାଣଖାଇବା, ଉଲ୍କାପାତ ସମୟରେ ମନସ୍କାମନା କରିବା, ମନ୍ତ୍ର ଉଚ୍ଚାରଣ କରିବା ଆଦିକୁ ଭାଷିକ ପରିପ୍ରକାଶ ଭାବରେ ଗ୍ରହଣ କରିବା । ସେହିପରି, ରୋଗ ବା ଡାଆଣୀ ଭଲକରିବାକୁଯାଇ ଗୁଣିଆ ବା ଦିଶାରୀର ଝାଡଫୁଙ୍କ ପ୍ରକ୍ରିୟା, ଭୁତପ୍ରେତଦାଉରୁ ରକ୍ଷାକରିବା ପାଇଁ ଗୁଣିଆ ସମ୍ପୃକ୍ତ ଗୃହକର୍ତ୍ତାଙ୍କ 'ଘର କିଳିବା'; ଅନୁରୂପଭାବରେ, ଝିଟିପିଟିର ଟିକ୍ଟିକ୍, ଫଳନ୍ତି ଗଛକୁ ତର୍ଜନୀ ଦେଖାଇବା, କାଉରାବିବା, କାଳିସୀଲାଗିବା ଆଦିକୁ ଆମେ ପରାଭାଷିକ ଏବଂ ନୈର୍ବାଚିକ ପରିପ୍ରକାଶ) ,…paralinguistic and nonverbal phenomena which have conventional meaning in each speech community, and knowledge of the full range of variants in all elements which are available for transmitting social, as well as referential, information (Muriel 2003, 19)'. (ଭାବରେ ଗ୍ରହଣକରିପାରିବା ।

*(ଘ) ନିବାରଣ (Resolutions of belief performances):*

ପୂର୍ବରୁ ଉଲ୍ଲେଖକରାଯାଇଛି ଯେ ଯେତେବେଳେ କୌଣସି ଘଟଣା ପ୍ରକ୍ରିୟାରେ ଆମ ଭିତରେ ନକାରାତ୍ମକ ବା ଋଣାତ୍ମକ ବିଶ୍ୱାସର ପ୍ରକରଣହୁଏ ସେତେବେଳେ ଆମେ ଏହାର ନିବାରଣପାଇଁ ଚେଷ୍ଟାକରିଥାଉ । ଉଦାହରଣସ୍ୱରୂପ, ଡାଆଣିଲାଗିଛି ବୋଲି ଭାବିଲେ ଗୁଣିଆକରିବା, ଗ୍ରହଦୋଷର ବିଶ୍ୱାସରୁ ଚଲାଭଙ୍ଗାକରିବା, ବସନ୍ତ ବିସୂଚିକାରେ ଗାଁ ଠାକୁରାଣୀଙ୍କ ପାଖରେ ଅଧିଆ ପଡିବା ତଥା ମାନସିକକରିବା ଆଦି ପ୍ରକ୍ରିୟାକୁ ନିଆଯାଇପାରେ । ସେହିପରି, ସାପକାମୁଡାରେ ଡାକ୍ତରୀ ଚିକିତ୍ସାନକରି ଝାଡଫୁଙ୍କ କରିବା ମଧ୍ୟ ଏହାର ଏକ ପ୍ରକୃଷ୍ଟ ଉଦାହରଣ । ଏହି ନିବାରଣ ପ୍ରକ୍ରିୟାରେ ବେଳେବେଳେ ନିର୍ଦ୍ଦିଷ୍ଟ ବ୍ୟକ୍ତି ଥାଆନ୍ତି ତ କେତେବେଳେ ସମ୍ପୃକ୍ତ ସାମାଜିକ ଗୋଷ୍ଠୀର ଯେକୌଣସି ସଦସ୍ୟ ଏହି ପ୍ରକ୍ରିୟା ସମ୍ପାଦନ କରିପାରନ୍ତି । ଉଦାହରଣସ୍ୱରୂପ— ଡାଆଣି ତଥା ଝାଡଫୁଙ୍କପାଇଁ ଗୁଣିଆ, ବସନ୍ତବିସୂଚିକାର ଗାଁ ପୂଜାରୀ ବା ଦିଶାରୀ, ଶିଶୁ ଖଟରୁପଡିଯିବା କ୍ଷେତ୍ରରେ ଶିଶୁର ମାଆ, କିରିଆଭାଙ୍ଗିବା କ୍ଷେତ୍ରରେ ଯେକୌଣସି ହୁରିଆ ସମ୍ପର୍କୀୟ ।

*(ଙ) ଉପକରଣ ଆନୁଷଙ୍ଗିକ/(Equipages related to performance of beliefs):*

ବିଶ୍ୱାସ ପ୍ରକ୍ରିୟାରୁ ଯେତେବେଳେ ଋଣାତ୍ମକ ତଥା ନକାରାତ୍ମକ ଅବଧାରଣା ଆସେ ଏବଂ ତାହାର ନିବାରଣ ପ୍ରକ୍ରିୟା ପାଳନ କରାଯାଏ ସେତେବେଳେ କେତେକ କ୍ଷେତ୍ରରେ ବିଭିନ୍ନ ଉପକରଣର ଉପେଯାଗ ଅନିବାର୍ଯ୍ୟ ହୋଇଥାଏ । ଏବଂ, ବିଶ୍ୱାସ ପ୍ରକ୍ରିୟାର ପାଳନ ଓ ପରିବେଷଣରେ ଏହାର ଭୂମିକା ସମ୍ପୃକ୍ତ ଲୋକଗୋଷ୍ଠୀରେ ଗୁରୁତ୍ୱପୂର୍ଣ୍ଣ ମଧ୍ୟ ମନେହୁଏ । ଶିଶୁ ଖଟରୁପଡିଯିବା କ୍ଷେତ୍ରରେ ପଡିଶା ଘରର ସାତଢାଳ ପାଣି, ରୋଗବହଳାରେ ରୋଗଭାର, ଡାଆଣିଖେଦାରେ ଗୁଣିଆର ପୂଜାପାଠ ତଥା ମନ୍ତ୍ର, 'ହରାଲି ଉଆସଁ'' ଦିନ ସୁନାରୀ, ବନହଳଦୀ, ଖଏଁସ ଡାଳ ଏବଂ ଲହାଗୁଁ ଆଦିକୁ ଏହାର ନିବାରକ ଉପକରଣ ଭାବରେ ଗ୍ରହଣକରାଯାଇପାରେ ।

ଯେକୌଣସି ବିଶ୍ୱାସ ସେ ନକାରାତ୍ମକ ବା ସକାରାତ୍ମକ ହେଉ, ସବୁ ଗୋଟିଏ ଗୋଟିଏ ପାରମ୍ପରିକ ଗୋଷ୍ଠୀର ଜୀବନଧାରା । ଏହା ସହିତ ଆମର ସାମାଜିକସାଂସ୍କୃତିକତା ଜଡିତ ତଥା ଆମର ଦୈନନ୍ଦିନ ଜୀବନକୁ - ବିଭିନ୍ନଭାବରେ ପ୍ରଭାବିତ କରିଥାଏ। ଏସବୁକୁ ଆମେ ଅନ୍ଧବିଶ୍ୱାସଭାବରେ ଗ୍ରହଣକରି ଏହାର ଅଧ୍ୟୟନକୁ ଉପେକ୍ଷା କରିପାରିବାନାହିଁ। ଲୋକଧାରାର ଅନ୍ୟାନ୍ୟ ଲୋକ ଉପାଦାନଭଳି ବିଭିନ୍ନ ବିଶ୍ୱାସର ପାଳନ ଏବଂ ପରିବେଷଣ ସମ୍ପୃକ୍ତ ଲୋକଗୋଷ୍ଠୀର ସଦସ୍ୟଙ୍କ ଭିତରେ ଆଦାନପ୍ରଦାନ, ଗୋଷ୍ଠୀଜୀବନପ୍ରତି ପ୍ରତିବଦ୍ଧତା, ପାରସ୍ପରିକ ଗ୍ରହଣଶୀଳତା, ସାମାଜିକ-ସାଂସ୍କୃତିକ ବିଧିବଦ୍ଧତା, 'ସାମାଜିକତା (Communities is modality of social relationship an "area of common living" that has many sacred attributes.) ('Communities' Turner 1991, 96) ର ପ୍ରତିଷ୍ଠାପନ, ସାଂସ୍କୃତିକ ପରିଚିତି ନିର୍ମାଣ ତଥା ଏହାର ପୁନଃପ୍ରତିଷ୍ଠା ଆଦିରେ ସହାୟକ ହୋଇଥାଏ, ଏଣୁ ଏସବୁର ବିଧିବଦ୍ଧ ଲୋକତାତ୍ତ୍ୱିକ ଅଧ୍ୟୟନ ଆବଶ୍ୟକ ମନେହୁଏ ।

**ସହାୟକ ଗ୍ରନ୍ଥସୂଚୀ**


[1] ସୁନାନୀ, ବାସୁଦେବ । ଦଳିତ ସଂସ୍କୃତିର ଇତିହାସ । ନୂଆପଡା : ଅଙ୍କିତ ପ୍ରକାଶନୀ-ଈଶାନ, ୨୦୦୯ ।

[2] Ashcroft, Bill, Gareth Griffiths, and Helen Tiffin. Post-Colonial Studies: The Key Concepts. New York: Routledge, 2007.

[3] Balibar, Etienne. ,Difference, Otherness, Exclusion.' Parallax 1:11.1(2005): 19–34. Accessed on 20 Feb. 2012. <http://www.tandf.co.uk/journals>.

[4] Casey, Suze. Belief: Re-Patterning. Johannesburg: Hay House Inc., 2012.

[5] Diller, Antoni. ,Everyday Belief-Acquisition'. Accessed on 11.July.2015.

<http://www.cantab.net/users/antoni.diller/papers/asai2000.pdf>.
[6] Levi, Isaac. The Fixation of Belief and its Undoing: Changing Beliefs through Inquiry. Cambridge: Cambridge University Press, 1991.
[7] Malinowski, Bronislaw. Magic, Science and Religion and other Essays. Boston: Free Press, 1948.
[8] Mullen, Patrik B. ‚Belief, Folkʿ. Folklore: An Encyclopedia of Beliefs, Customs, Tales, Music and Art. eds. Charlie T. McCormick, and Kim Kennedy White. California: ABC CLIO, LLC., 2011. 206-216.
[9] Poling, Devereaux A. and E. Margaret Evans. ‚Religious Belief, Scientific Expertise, and Folk Ecologyʿ. Journal of Cognition and Culture 4.3(2004): 485-524. Accessed on 3 Feb 2014. www-ersonal.umich.edu/~evansem/JCC_Pol_Evans.pdf
[10] Quuine, Willard Van Orman and Joseph SilbertUllian. The Web of Belief. New York: McGraw-Hill, Inc., 1978.
[11] Rajadhon, PhyaAnuman. Essays on Thai Folklore. 1968. Bangkok: Thai Inter-Religious Commission for Development &SathirakosesNagapradipa Foundation, 1988.
[12] Rogers, Arthur Kenyon.‚The Nature of Beliefʿ. Belief, Knowledge, and Truth: Readings in the Theory of Knowledge. eds. Robert R. Ammerman, and Marcus G. Singer. New York: Charles Scribner's Sons, 1970. 26-30.
[13] Turner, Victor Witter. Ritual Process: Structure and Anti-Structure. 1966. Chicago: Aldine Publishing Company, 1991.
[14] Van Gennep, Arnold. The Rites of Passage. 1960. London: Routledge, 2004.
[15] Wilson, John Cook. ‚Knowledge, Opinion, Conviction, and Beliefʿ. Belief, Knowledge, and Truth: Readings in the Theory of Knowledge. eds. Robert R. Ammerman, and Marcus G. Singer. New York: Charles Scribner's Sons, 1970. 31-38.